# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**Feb-March- 2018**

୭୪ ଭାଗ    ୭ମ/୮ମ ସଂଖ୍ୟା  ମାଘ-ଚୈତ୍ର  ଫେବୃଆରୀ-ମାର୍ଚ୍ଚ - ୨୦୧୮







ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର-୭୫୧୦୦୧

ଇ-ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.odisha.gov.in

ଫୋନ୍ : ୦୬୭୪-୨୫୩୦୨୧୧

ପ୍ରତିଖଣ୍ଡ : ଟ. ୫.୦୦



# ସୂଚୀ

ଫେବୃଆରୀ–ମାର୍ଚ୍ଚ – ୨୦୧୮





# ଶ୍ରଦ୍ଧାଞ୍ଜଳି



ଉତ୍କଳଗୌରବ ମଧୁସୂଦନ ଦାସ

# ଶ୍ରଦ୍ଧାଞ୍ଜଳି







ଯୋଗଜନ୍ମା ଆଚାର୍ଯ୍ୟ ହରିହର

# ସମ୍ପାଦକୀୟ



ଓଡ଼ିଶା ଆଜି ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ବଳିଷ୍ଠ ନେତୃତ୍ୱକ୍ରମେ ପ୍ରତ୍ୟେକ କ୍ଷେତ୍ରରେ ବିକାଶ ଲାଭ କରିପାରିଛି । କେତେକ କ୍ଷେତ୍ରରେ ଆମ ରାଜ୍ୟର ଅଭିବୃଦ୍ଧି ହାର ଜାତୀୟ ସ୍ତରଠାରୁ ଊର୍ଦ୍ଧ୍ୱରେ ଅଛି । ସାମୂହିକ ବିକାଶ ସହ ଆମ ରାଜ୍ୟ ଆଜି କ୍ରୀଡା କ୍ଷେତ୍ରରେ ମଧ୍ୟ ନିଜସ୍ୱ ଛାପ ଛାଡ଼ିଯାଇଛି । ଜାତୀୟ ଖେଳ ହକିକୁ ସମୃଦ୍ଧ କରିଥିବା ଓଡ଼ିଶା, ପ୍ରଥମ ରାଜ୍ୟ ଭାବେ ଏହି ଖେଳର ପ୍ରାୟୋଜକ ହୋଇପାରିଛି । ପ୍ରାଶାସନିକ ସ୍ତରରେ ତିନିଗୋଟି 'ଟି' ଯଥା– ଟ୍ରାନ୍ସପାରେନ୍ସି, ଟେକ୍ନୋଲୋଜି ଓ ଟିମ୍‌ୱାର୍କର ସଫଳ ପ୍ରୟୋଗ ପୂର୍ବକ ଆଜି ଆମ ରାଜ୍ୟ ସମଗ୍ର ବିଶ୍ୱର ଦୃଷ୍ଟି ଆକର୍ଷଣ କରିପାରିଛି ।

ଘଟଣାକ୍ରମେ ପ୍ରବାଦପୁରୁଷ ବିଜୁ ପଟ୍ଟନାୟକଙ୍କ ଜନ୍ମ ଶତବାର୍ଷିକୀ ପାଳନ ଅବସରରେ ତାଙ୍କ ଉପରେ ଲିଖିତ 'ଦି ଟଲ୍ ମ୍ୟାନ୍– ବିଜୁ ପଟ୍ଟନାୟକ' ପୁସ୍ତକ, ଭାରତର ପୂର୍ବତନ ରାଷ୍ଟ୍ରପତି ଡକ୍ଟର ପ୍ରଣବ ମୁଖାର୍ଜୀ, ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀ ଏଚ୍.ଡି. ଦେବେଗୌଡା, ପୂର୍ବତନ ଉପ ପ୍ରଧାନମନ୍ତ୍ରୀ ଶ୍ରୀ ଏଲ୍.କେ. ଆଡଭାନୀ, କମ୍ୟୁନିଷ୍ଟ ନେତା ଶ୍ରୀ ସୀତାରାମ ୟେଚୁରୀ ଏବଂ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ଉପସ୍ଥିତିରେ, ଉନ୍ମୋଚିତ ହୋଇଯାଇଛି । ବିଜୁବାବୁଙ୍କ ନିଷ୍ଠା, ସାହସ ଏବଂ ସ୍ୱପ୍ନକୁ ବାସ୍ତବରେ ପରିଣତ କରିବାର ଦୁର୍ବାର ଅଭୀପ୍ସା କେବଳ କେତେଖଣ୍ଡ ପୁସ୍ତକରେ ବର୍ଣ୍ଣନା କରାଯାଇନପାରେ । ଏହି ଯୋଗଜନ୍ମାଙ୍କ ବଳିଷ୍ଠ ବ୍ୟକ୍ତିତ୍ୱ ନିମନ୍ତେ ଓଡ଼ିଶା ସାରା ବିଶ୍ୱରେ ଖ୍ୟାତ । ବିଜୁବାବୁଙ୍କୁ ମରଣୋତ୍ତର ଭାବେ 'ଭାରତରତ୍ନ' ସମ୍ମାନରେ ଭୂଷିତ କରିବା ନିମନ୍ତେ ଅନେକ ଜାତୀୟସ୍ତରୀୟ ନେତୃବୃନ୍ଦ, ବିଭିନ୍ନ ଅନୁଷ୍ଠାନ ବାରମ୍ବାର ଦାବି କରିଚାଲିଥିଲେ ସୁଦ୍ଧା କୌଣସି ସମ୍ମାନ ଯେ, ବିଜୁବାବୁଙ୍କ ବହୁବିଧ କୃତିର ସଠିକ୍ ମୂଲ୍ୟାୟନ କରିପାରିବ, ତାହା ମୁଁ ଭାବିପାରୁନାହିଁ । ତେବେ ଉପରୋକ୍ତ ପୁସ୍ତକ ଉନ୍ମୋଚନ କାଳରେ ଏତେ ସଂଖ୍ୟକ ଲୋକଙ୍କ ସମାହାର ହୋଇଥିବା ଦେଖି ମୁଁ ପ୍ରକୃତରେ ଅଭିଭୂତ ହୋଇପଡିଥିଲି । ଏହା ଯେ, ତାଙ୍କର ମନର ମଣିଷ ପ୍ରତି ଥିବା ନିଚ୍ଛକ ଭଲ ପାଇବାର ନିଦର୍ଶନ, କହିବା ବାହୁଲ୍ୟ ମାତ୍ର । ଓଡ଼ିଶାରେ ନାରୀ ସଶକ୍ତିକରଣ ଏବଂ ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥାର ଆଦ୍ୟ ପ୍ରବର୍ତ୍ତକ ଭାବେ ସମାଜ ସଂସ୍କାର ଦିଗରେ ତାଙ୍କର ମହତ ଉଦ୍ୟମ ସବୁଦିନ ପାଇଁ ମନେ ରହିବ ।

ନିକଟ ଅତୀତରେ ଉପସ୍ଥାପିତ କେନ୍ଦ୍ରୀୟ ବଜେଟ୍ ଆମ ରାଜ୍ୟ ପ୍ରତି ଅନେକ କ୍ଷେତ୍ରରେ ନୈରାଶ୍ୟଜନକ ଅଟେ । ୨୦୨୨ ମସିହାକୁ ଦୃଶ୍ୟପଟ୍ଟରେ ରଖି ଏହା ପ୍ରସ୍ତୁତ ହୋଇଥିଲେ ମଧ୍ୟ କାର୍ଯ୍ୟାନ୍ୱୟନ ଏବଂ ଆର୍ଥିକ ପ୍ରତିଶ୍ରୁତିର ତାରତମ୍ୟ ପରିଲକ୍ଷିତ ହୋଇଛି । ବଜେଟ୍‌ରେ କୃଷି ଏବଂ ଗ୍ରାମୀଣ ଅର୍ଥନୀତି ଉପରେ ଗୁରୁତ୍ୱାରୋପ କରାଯାଇଥିଲେ ମଧ୍ୟ ଜଳସେଚନ ସୁବିଧା ସୃଷ୍ଟି କରିବା ଉପରେ ଧ୍ୟାନ ଦିଆଯାଇନାହିଁ । ଧାନର ସର୍ବନିମ୍ନ ସହାୟକ ମୂଲ୍ୟ ଉତ୍ପାଦନ ମୂଲ୍ୟର ୧.୫ ଗୁଣ ବର୍ଦ୍ଧିତ କରାଯିବାକୁ ଘୋଷଣା କରାଯାଇଥିଲେ ମଧ୍ୟ ସମସ୍ତ ଶସ୍ୟ ପାଇଁ କେନ୍ଦ୍ର ସରକାରଙ୍କ ଦ୍ୱାରା କିପରି ଏହି ସର୍ବନିମ୍ନ ସହାୟକ ମୂଲ୍ୟ ଲାଗୁ କରାଯିବ, ତାହା ସ୍ପଷ୍ଟ ହୋଇନି । ମହାତ୍ମା ଗାନ୍ଧୀ ଜାତୀୟ ଗ୍ରାମୀଣ ନିଶ୍ଚିତ କର୍ମନିଯୁକ୍ତି ଏବଂ ପିଏମ୍‌ଜିଏସ୍‌ୱାଇ କାର୍ଯ୍ୟକ୍ରମକୁ ଆହୁରି ବ୍ୟାପକ କରିବା ନିମନ୍ତେ ଭାରତ ସରକାର ପର୍ଯ୍ୟାପ୍ତ ପାଣ୍ଠି ମଞ୍ଜୁର କରିନାହାନ୍ତି । ସେହିପରି ଅନୁସୂଚିତ ଜନଜାତି ଓ ଜାତି ବର୍ଗର ଉନ୍ନତି ନିମନ୍ତେ କେନ୍ଦ୍ରୀୟ ବଜେଟ୍‌ରେ ଆଖିଦୃଶିଆ ବ୍ୟବସ୍ଥା ନାହିଁ ।

ଚରମ କେନ୍ଦ୍ରୀୟ ଅବହେଳା ସତ୍ତ୍ୱେ ଓଡ଼ିଶା ସରକାର ବିଭିନ୍ନ କ୍ଷେତ୍ରରେ ନିଜସ୍ୱ ପାଣ୍ଠିରୁ ଅନେକ ଜନହିତକର ଯୋଜନା କାର୍ଯ୍ୟକାରୀ କରୁଛନ୍ତି । ମହିଳା ସଶକ୍ତିକରଣ ଦିଗରେ ରାଜ୍ୟ ସରକାର ଉଲ୍ଲେଖନୀୟ ସଫଳତା ହାସଲ କରିଛନ୍ତି । ମିଶନ ଶକ୍ତିଠାରୁ ଆରମ୍ଭ କରି ମମତା ଯୋଜନାର ସଫଳ ରୂପାୟନ ସହ ପଞ୍ଚାୟତିରାଜ ଅନୁଷ୍ଠାନ ଓ ସହରାଞ୍ଚଳ ସ୍ୱାୟତ୍ତ ଶାସନ କ୍ଷେତ୍ରରେ ୫୦ ପ୍ରତିଶତ ସ୍ଥାନ ମହିଳାମାନଙ୍କ ନିମନ୍ତେ ସଂରକ୍ଷଣ କରାଯାଇଛି । ସ୍କୁଲ ଯାଉଥିବା ଷଷ୍ଠରୁ ଦ୍ୱାଦଶ ଶ୍ରେଣୀର ୧୭ ଲକ୍ଷ ଛାତ୍ରୀଙ୍କୁ ସ୍ୱଚ୍ଛତା ଅଭିଯାନରେ ସାମିଲ କରାଇ ସେମାନଙ୍କୁ ବିନା ମୂଲ୍ୟରେ ସାନିଟାରୀ ନାପ୍‌କିନ୍ ଯୋଗାଇ ଦେବାର ବନ୍ଦୋବସ୍ତ କରାଯାଇଛି ।

'କଥା ନୁହେଁ, କଠିନ ପରିଶ୍ରମ'ରେ ବିଶ୍ୱାସୀ ଆମ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ । ଓଡ଼ିଶାର ସାମୂହିକ ବିକାଶ ନିମନ୍ତେ ତାଙ୍କର ନିରନ୍ତର ନିଷ୍ଠା ଓ ପରିଶ୍ରମ ଯୋଗୁଁ ସେ ଆଜି ଦେଶରେ 'ଆଦର୍ଶ ମୁଖ୍ୟମନ୍ତ୍ରୀ' ଭାବେ ସ୍ୱତନ୍ତ୍ର ପରିଚିତି ହାସଲ କରିପାରିଛନ୍ତି । ଜାତୀୟ ସ୍ତରରେ ଓଡ଼ିଶାର ସମ୍ମାନ ବହୁଗୁଣିତ କରିଥିବାରୁ ରାଜ୍ୟବାସୀଙ୍କ ସମେତ ମୁଁ ମୋର ହୃଦୟରୁ ଗଭୀର କୃତଜ୍ଞତା ଜଣାଉଛି ।

ଲେଳିନ୍ ମହାନ୍ତି

ସମ୍ପାଦକ

# ପୁନେଠାରେ ‘ଆଦର୍ଶ ମୁଖ୍ୟମନ୍ତ୍ରୀ’ ପୁରସ୍କାର ଗ୍ରହଣ ଅବସରରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ଅଭିଭାଷଣ

## ‘ଭଲ ନେତା ହେବା ପାଇଁ ଲୋକଙ୍କୁ ଆନ୍ତରିକ ଭାବରେ ଭଲ ପାଇବା ଦରକାର ।’



ଧନ୍ୟବାଦ... ଏହି ସମ୍ମାନ ପାଇଁ ଭାରତୀୟ ଛାତ୍ର ସଂସଦ ଏବଂ ଏମ୍.ଆଇ.ଟି, ସ୍କୁଲ ଅଫ୍ ଗଭର୍ଣ୍ଣମେଣ୍ଟଙ୍କୁ ଧନ୍ୟବାଦ ।

ଗତ ୧୭ ବର୍ଷ ଧରି ଆମ ଉପରେ ଅତୁଟ ଭରସା ରଖିଥିବା ଏବଂ କ୍ରମାଗତଭାବେ ଆମକୁ ଆଶୀର୍ବାଦ କରିଥିବା ଓଡ଼ିଶାର ସାଢ଼େ ଚାରି କୋଟି ଲୋକଙ୍କୁ ମୁଁ ଏହି ସମ୍ମାନ ସମର୍ପିତ କରୁଛି ।

ଗଣତନ୍ତ୍ରକୁ ସୁଦୃଢ଼ କରିବା ପାଇଁ କାମ କରୁଥିବା ପ୍ରଥମ ଅନୁଷ୍ଠାନର ଏହି କାର୍ଯ୍ୟକ୍ରମରେ ଯୋଗ ଦେଇ ମୁଁ ବହୁତ ଖୁସି ଏବଂ ଗଣତନ୍ତ୍ରକୁ ସୁଦୃଢ଼ କରିବାର ସବୁଠାରୁ ଚମତ୍କାର ମାଧ୍ୟମ, ଯୁବଶକ୍ତି ସହିତ ଯୋଡି ହେବାର ସୁଯୋଗରେ ମୁଁ ବହୁତ ଖୁସି ।

ସମୟ ଗତିପଥ ସହିତ ତାଳ ଦେଇ ସବୁ ଜିନିଷ ନିଜ ନିଜର ଉଚ୍ଚତର ସ୍ତରକୁ ଗତି କରିଥାନ୍ତି । ଏହା ହେଉଛି ପରିପୂର୍ଣ୍ଣତା ପାଇଁ ମଣିଷର ଅହରହ ଉଦ୍ୟମର ବୈଶିଷ୍ଟ୍ୟ । ଆପଣ ଯେକୌଣସି କ୍ଷେତ୍ରକୁ ଦେଖନ୍ତୁ- ଜୀବବିଜ୍ଞାନ, ଗଣିତ, ଭେଷଜ, ସୂଚନାପ୍ରଯୁକ୍ତି- ଏସବୁ କ୍ଷେତ୍ରରେ ଆମେ ଅପରିସୀମ ଅଗ୍ରଗତି କରିଛୁ । ବାସ୍ତବରେ ଗତ ୨୦୦ ବର୍ଷ ମଧ୍ୟରେ ମାନବ ବିବର୍ତ୍ତନରେ ଅଭୂତପୂର୍ବ ପରିବର୍ତ୍ତନ ଆସିଛି ।

କିଏ ଦିନେ ଭାବିଥିଲା ଯେ ଟୁଇଟର୍ ଓ ଫେସବୁକ୍ ଆମ ଜୀବନ ଓ ସାମାଜିକ ସମ୍ପର୍କ ସହିତ ଅଙ୍ଗାଙ୍ଗୀଭାବେ ଜଡିତ ହୋଇଯିବ ।

କିଏ ଦିନେ ଭାବିଥିଲା ଯେ ବିଗ୍ ଡାଟା, ବ୍ଲକ୍ ଚେନ୍ସ ଏବଂ ନାନୋ ଟେକ୍ନୋଲୋଜି ଆମ ଜୀବନରେ ବୈପ୍ଳବିକ ପରିବର୍ତ୍ତନ ଆଣିବ । ତେବେ ଆମେ ସମସ୍ତେ ଏକମତ ହେବା ଯେ ପ୍ରଶାସନ ଓ ଜନସେବାରେ ଯେଉଁ ବିବର୍ତ୍ତନ ଆସିବା କଥା, ତାହା ଆଜି ପର୍ଯ୍ୟନ୍ତ ଆସିପାରି ନାହିଁ ।

ଉତ୍ତମ ପ୍ରଶାସନ ଓ ନିଃସ୍ୱାର୍ଥପର ଜନସେବା ଗଣତନ୍ତ୍ରର ଦୃଢ ସ୍ତମ୍ଭ । ଆମ ପାଖରେ ସବୁଠାରୁ ବଡ ଆହ୍ୱାନ ହେଉଛି, କେମିତି ଆମର ପ୍ରଶାସନ ଓ ଜନସେବାକୁ ସୁଦୃଢ କରିବା ଏବଂ ଏହା ଜରିଆରେ ଗଣତନ୍ତ୍ରକୁ ସୁଦୃଢ କରିବା । ବିଶେଷ କରି ଆମ ଯୁବ ସମାଜ ପାଖରେ ଏହା ହେଉଛି ସବୁଠାରୁ ବଡ ଆହ୍ୱାନ ।




ଆପଣମାନେ ଗତ କିଛି ଦିନ ଧରି ମହାନ୍ ବକ୍ତାମାନଙ୍କ ଅଭିଭାଷଣ ଶୁଣି ଆସୁଛନ୍ତି । ତେବେ ମୁଁ ଏଠାରେ କହି ରଖେ ଯେ, ମୁଁ ସେପରି ଏକ ବକ୍ତା ନୁହେଁ ।

୨୦ ବର୍ଷ ତଳେ ରାଜନୀତିରେ ମୁଁ ଥିଲି ନବାଗତ । ମୁଁ କେବେ ବି ଭାବି ନଥିଲି ଯେ ମୁଁ ଦିନେ ଏଠାରେ ସବୁଠାରୁ ଦୀର୍ଘଦିନ ଧରି ମୁଖ୍ୟମନ୍ତ୍ରୀ ଥିବା ଜଣେ ବ୍ୟକ୍ତି ଭାବରେ ଆପଣଙ୍କ ପାଖରେ ଉପସ୍ଥିତ ହେବି ।

ଆଜି ମୁଁ ଦୃଢ ବିଶ୍ୱାସର ସହ କହିବାକୁ ଚାହେଁ ଯେ ରାଜନୀତି ଏତେ ଜଟିଳ ନୁହେଁ । ରାଜନୀତି ହେଉଛି, ଲୋକଙ୍କ ଜୀବନରେ ପରିବର୍ତ୍ତନ ଆଣିବାର ସବୁଠାରୁ ବଳିଷ୍ଠ ମାଧ୍ୟମ । ତେଣୁ ଏହା ସ୍ପଷ୍ଟ ଯେ, ତୁମର ମନୋବୃତ୍ତି ଓ ଉଦ୍ୟମରେ ଯଦି ଜନସାଧାରଣ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଗ୍ରହଣ କରନ୍ତି, ତା'ହେଲେ ରାଜନୀତିରେ କୌଣସି ଜଟିଳତା ନାହିଁ ।

ମହାତ୍ମା ଗାନ୍ଧୀ ଏହାକୁ ତାଙ୍କ ସ୍ୱର୍ଣ୍ଣମଣିରେ ଏହିପରି ଭାବରେ ବର୍ଣ୍ଣନା କରିଛନ୍ତି- ବୋଧହୁଏ ଏହା ହେଉଛି ସବୁ ଯୁଗ ପାଇଁ ସବୁଠାରୁ ବଡ ଗୁରୁତ୍ୱପୂର୍ଣ୍ଣ ରାଜନୈତିକ ଦର୍ଶନ ।

ଟାଲିସମ୍ୟାନ (ସ୍ୱର୍ଣ୍ଣମଣି)- ମୁଁ ତୁମମାନଙ୍କୁ ଗୋଟିଏ ସ୍ୱର୍ଣ୍ଣମଣି ଦେବି । ଯେତେବେଳେ ସନ୍ଦେହ ଆସିବ କିମ୍ବା ତୁମେ ତୁମ ନିଜର ଓଜନରେ ଭାରାକ୍ରାନ୍ତ ହୋଇଯିବ, ତେବେ ଏହି ପରୀକ୍ଷା ଅବଲମ୍ୱନ କର । ତୁମେ ଦେଖିଥିବା ସବୁଠାରୁ ଗରିବ ଓ ସବୁଠାରୁ ଦୁର୍ବଳ ଲୋକର ମୁହଁକୁ ମନେ ପକାଅ ଏବଂ ତୁମ ନିଜକୁ ପଚାର ଯେ ତୁମେ ଯେଉଁ ପଦକ୍ଷେପ ନେଉଛ, ତା' ଦ୍ୱାରା ସେହି ଲୋକର କିଛି ଉପକାର ହେବ କି ନାହିଁ । ଏହାଦ୍ୱାରା ତା'ର କିଛି ଲାଭ ହେବ କି ? ଏହାଦ୍ୱାରା ତା'ର ଜୀବନ ଓ ତା'ର ଭାଗ୍ୟ ଉପରେ ତା'ର ନିଜର କିଛି ନିୟନ୍ତ୍ରଣ ଆସିବ କି ?

ରାଜନୈତିକ ଜୀବନରେ ଜଣେ ବ୍ୟକ୍ତି ଏହିଭଳି ପରିସ୍ଥିତିକୁ ଦୈନନ୍ଦିନ ଅନୁଭବ କରେ । ଛଅମାସ ତଳେ ଆମକୁ ସହରାଞ୍ଚଳରେ ଥିବା ବସ୍ତିବାସିନ୍ଦାଙ୍କ ପାଇଁ ଏକ ନିଷ୍ପତ୍ତି ନେବାକୁ ପଡିଥିଲା ।

ଆମ ପାଖରେ ଗୋଟିଏ ବାଟ ଥିଲା ଯେ ସେମାନଙ୍କୁ ଉଚ୍ଛେଦ କରିବାର ପ୍ରଥା ଜାରି ରଖିବା ଏବଂ ସେମାନଙ୍କୁ ଜବରଦଖଲକାରୀଭାବେ ପରିଗଣିତ କରିବା ଏବଂ ଲକ୍ଷ ଲକ୍ଷ ପରିବାରକୁ ଭୟ ଓ ଅସହାୟତାର ବାତାବରଣ ମଧ୍ୟରେ ରଖିବା । ଆଉ ଗୋଟିଏ ବାଟ ଥିଲା, ସହରର ଦୈନନ୍ଦିନ ଜୀବନରେ ସେମାନଙ୍କର ଗୁରୁତ୍ୱପୂର୍ଣ୍ଣ ଯୋଗଦାନକୁ ଗ୍ରହଣ କରିବା ଓ ସେମାନଙ୍କୁ ଜମି ଅଧିକାର ପ୍ରଦାନ କରିବା ।

ଲୋକଙ୍କୁ ପ୍ରାଥମିକତା ଦେଇ ଆମେ ଦ୍ୱିତୀୟ ପଥଟି ଅନୁସରଣ କଲୁ । ଯାହା ଗୋଟିଏ ଅତି ଜଟିଳ ପରିସ୍ଥିତି ବୋଲି ଲାଗୁଥାଏ, ତାହାର ଗୋଟିଏ ସରଳ ସମାଧାନ ଥାଏ ।

ଏହି ନିଷ୍ପତ୍ତି ଦେଶରେ ପ୍ରଥମ ଥର ପାଇଁ ନିଆଯାଇଛି ଏବଂ କୁହାଯାଉଛି ଯେ, ଏହା ହେଉଛି ଐତିହାସିକ ଓ ପଥ ପ୍ରଦର୍ଶକ ।

ଯେତେବେଳେ ତୁମେ ଲୋକଙ୍କୁ ପ୍ରାଥମିକତା ଦିଅ– ତାହା ହେଉଛି ଭଲ ରାଜନୀତି

ଯେତେବେଳେ ତୁମେ ଲୋକଙ୍କୁ ପ୍ରାଥମିକତା ଦିଅ, ସେତେବେଳେ ସରକାର ବିରୋଧୀ ହାୱା ନଥାଏ

ବିଶ୍ୱର ଜଣେ ମହାନ ଦୂରଦ୍ରଷ୍ଟା ମାର୍ଟିନ୍ ଲୁଥର କିଙ୍ଗ୍ କହିଥିଲେ ଯେ ତୁମେ ଯଦି ଲୋକଙ୍କୁ ଭଲ ନ ପାଇବ, ତେବେ ସେମାନଙ୍କ ନେତୃତ୍ୱ ନେଇପାରିବ ନାହିଁ ।

ଏହା ହେଉଛି ମୋ ରାଜନୈତିକ ଦର୍ଶନର ଆଉ ଗୋଟିଏ ପଥ ପ୍ରଦର୍ଶକ ।

ତୁମେ ଯଦି ଲୋକଙ୍କୁ ଭଲ ପାଅ, ତେବେ ତୁମେ ରହିଥିବା ପଦବୀକୁ କେବଳ ଏକ ପଦବୀ ବୋଲି ଭାବ ନାହିଁ, ବରଂ ଏହାକୁ ସେବାର ଏକ ମାଧ୍ୟମ ବୋଲି ଗ୍ରହଣ କରି ତୁମେ କ୍ଷମତାକୁ କ୍ଷମତା ବୋଲି ଭାବ ନାହିଁ, ବରଂ ଲୋକଙ୍କ ଜୀବନରେ ପରିବର୍ତ୍ତନ ଆଣିବାର ମାଧ୍ୟମ ବୋଲି ଭାବି କାମ କରି ଚାଲ ।

ଯଦି ତୁମେ ଲୋକଙ୍କୁ ଭଲ ପାଉଥାଅ, ତେବେ ରାଜନୀତିର ସବୁ ନକାରାତ୍ମକ ବିଷୟ– କ୍ଷମତା, ସମ୍ପତ୍ତି, ପଦବୀ, ଏସବୁର ମୂଲ୍ୟହୀନ ହୋଇପଡେ ।

ତୁମେ ଯଦି ଲୋକଙ୍କ ସ୍ନେହ ଓ ଶ୍ରଦ୍ଧା ପାଇଁ କାମ କର, ତେବେ ସବୁଠାରୁ ଭୟଙ୍କର ପ୍ରାକୃତିକ ବିପର୍ଯ୍ୟୟ ସମୟରେ ମଧ୍ୟ ଯେପରି ଗୋଟିଏ ବି ଜୀବନ ନଷ୍ଟ ନ ହୁଏ, ତୁମେ ସେଥିପାଇଁ ଉଦ୍ୟମ କର ଏବଂ ବିଶ୍ୱସ୍ତରରେ ନୂଆ ବେଞ୍ଚ୍ ମାର୍କ ପ୍ରତିଷ୍ଠା କରିପାରିବ । ଯଦି ତୁମେ ଲୋକଙ୍କୁ ଭଲ ପାଇବ, ତେବେ ତୁମେ କେବେ ବି ଚାହିଁବ ନାହିଁ, ଯେ କେହି ଖୋଲା ଆକାଶ ତଳେ ରହୁ, ଫଳତଃ ତୁମେ ଗ୍ରାମ୍ୟଗୃହ ନିର୍ମାଣରେ ଦେଶରେ ଅଗ୍ରଣୀ ହୋଇପାରିବ । ତୁମେ ଯଦି ତୁମର ଲୋକଙ୍କୁ ଭଲପାଅ, ତେବେ ରାଜ୍ୟର ବିକାଶର କାହାଣୀରେ ସବୁଠାରୁ ଦୁର୍ବଳ ଓ ଅସୁରକ୍ଷିତ ଲୋକଙ୍କୁ ଭାଗୀଦାର କରିବା ପାଇଁ ଆହୁରି ଅଧିକ ପଥ ଅତିକ୍ରମ କରିବାକୁ ଉଦ୍ୟମ କର ଏବଂ ଶେଷରେ ଜନଜାତି ବିକାଶ ପରିଷଦ ଗଠିତ ହୋଇପାରିବ ।

ତୁମେ ଯଦି ତୁମର ଲୋକଙ୍କୁ ଭଲ ପାଅ, ତେବେ ତୁମେ କେବେ ଚାହିଁବ ନାହିଁ ଯେ ଲୋକମାନେ ରାତିରେ ଭୋକିଲା ରୁହନ୍ତୁ ଏବଂ ଶେଷରେ ତୁମେ ଦେଶରେ ଗରିବୀ ହ୍ରାସ ଦିଗରେ ସବୁଠାରେ ଭଲ ରାଜ୍ୟ ହୋଇପାରିବ । ଯଦି ତୁମେ ତୁମ ଲୋକଙ୍କୁ ଭଲ ପାଅ, ତେବେ ତୁମର ଲକ୍ଷ୍ୟ ନିର୍ବାଚନରେ ଜିତିବା ନୁହେଁ, ସମାଜର ପରିବର୍ତ୍ତନ ହେବ ତୁମ ସଂଗ୍ରାମର ଲକ୍ଷ୍ୟ । ଯଦି ତୁମେ ତୁମର ଲୋକଙ୍କୁ ଭଲ ପାଅ, ତେବେ ତୁମର ପ୍ରତ୍ୟେକ ପଦକ୍ଷେପ, ତୁମର ପ୍ରତ୍ୟେକ କାର୍ଯ୍ୟକ୍ରମ, ତୁମର ପ୍ରତ୍ୟେକ ସ୍ୱାକ୍ଷର ଏବଂ ତୁମର ପ୍ରତ୍ୟେକ ନିଃଶ୍ୱାସ ସହିତ ସେମାନଙ୍କ ପାଇଁ କାମ କରିଚାଲିବ । ତୁମର ଶେଷ ନିଃଶ୍ୱାସ ତ୍ୟାଗର ବହୁଦିନ ପର୍ଯ୍ୟନ୍ତ ତୁମେ ମହାତ୍ମା ଗାନ୍ଧୀ ଓ ବିଜୁବାବୁଙ୍କ ପରି ଲୋକଙ୍କ ହୃଦୟରେ ବଞ୍ଚି ରହିବ । ଆଜି ମଧ୍ୟ ମୁଁ ନିଜକୁ ରାଜନୀତିରେ ନବାଗତ ବୋଲି ଅନୁଭବ କରୁଛି । ମୁଁ କେବଳ ସେହି ଦୁଇଟି ନୀତିକୁ ଅନୁସରଣ କରୁଛି ଏବଂ ଓଡ଼ିଶାର ଜନସାଧାରଣ ନିରନ୍ତର ଭାବରେ ମୋତେ ଆଶୀର୍ବାଦ କରିଛନ୍ତି ଓ ମୋ ଉପରେ ଆସ୍ଥା ରଖିଛନ୍ତି ।

ମୁଁ ଆଜି ସାଢ଼େ ଚାରି କୋଟି ଓଡ଼ିଆଙ୍କ ସ୍ନେହ ଆଦରରେ ପରିପୁଷ୍ଟ ଏକ ପରିବାରର ଜଣେ ସଦସ୍ୟ ହୋଇରହିଛି । ଅଧିକରୁ ଅଧିକ ଭଲ ଲୋକ ରାଜନୀତିରେ ଯୋଗ ଦେବା ଉଚିତ ଏବଂ ନିଜେ ଚାହୁଁଥିବା ପରିବର୍ତ୍ତନର ଅଂଶ ହେବା ଉଚିତ । ଯଦି ତୁମେ ଲୋକଙ୍କୁ ସବୁଠାରୁ ଆଗରେ ରଖିବ, ତେବେ ଏହା ଏକ ରାଜନୈତିକ ଯାତ୍ରା ନୁହେଁ, ଏହା ଏକ ଆଧ୍ୟାତ୍ମିକ ଅନୁଭୂତି ହେବ ।

❖ ❖ ❖



## ୨୦୧୭-୧୮ ବର୍ଷରେ (୨୦୧୮ ଜାନୁଆରୀ ମାସ ପର୍ଯ୍ୟନ୍ତ)

# ପଞ୍ଚାୟତିରାଜ ଏବଂ ପାନୀୟ ଜଳ ବିଭାଗର ଉଲ୍ଲେଖନୀୟ କାର୍ଯ୍ୟାବଳୀ

ସୁଚେତା ପ୍ରିୟଦର୍ଶିନୀ

ରାଜ୍ୟରୁ ଦାରିଦ୍ର୍ୟ ଦୂରୀକରଣ ନିମନ୍ତେ ଅନେକଗୁଡିଏ କାର୍ଯ୍ୟକ୍ରମର ରୂପାୟନ ଦାୟିତ୍ୱ ପଞ୍ଚାୟତିରାଜ ଏବଂ ପାନୀୟ ଜଳ ବିଭାଗ ଉପରେ ନ୍ୟସ୍ତ । ଏହି ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମଗୁଡିକ ବିଶେଷତଃ ଦାରିଦ୍ର୍ୟ ସୀମାରେଖା ତଳେ ଥିବା ଗ୍ରାମାଞ୍ଚଳ ପରିବାରଗୁଡିକର ଆବଶ୍ୟକତା ପୂରଣ ଦିଗରେ ଅଭିପ୍ରେତ ।

### ୧. ଆତ୍ମନିଯୁକ୍ତି କାର୍ଯ୍ୟକ୍ରମ

### ଜାତୀୟ ଗ୍ରାମୀଣ ଜୀବିକା ମିଶନ:

ଚଳିତ ୨୦୧୭-୧୮ ଆର୍ଥିକ ବର୍ଷର ଜାନୁଆରୀ ୨୦୧୮ ପର୍ଯ୍ୟନ୍ତ ସମୁଦାୟ ମଂଜୁର ଅର୍ଥ ୨୭୦୬୫.୭୭ ଲକ୍ଷ ଟଙ୍କା ମଧ୍ୟରୁ ୨୧୩୪୦.୫୬ ଲକ୍ଷ ଟଙ୍କା ବିନିଯୋଗ କରାଯାଇଛି । ଏହି ବିନିଯୋଗ ହାର ଶତକଡା ୭୯ ପ୍ରତିଶତ ଅଟେ । ୮୦,୦୦୦ ସଂଖ୍ୟକ ସ୍ୱୟଂ ସହାୟକ ଗୋଷ୍ଠୀଙ୍କୁ ଋଣ ଅନୁବନ୍ଧିତ କରାଯିବା ପାଇଁ ଲକ୍ଷ୍ୟଧାର୍ଯ୍ୟ ହୋଇଥିବା ସ୍ଥଳେ ୬୯୦୨୬ ସଂଖ୍ୟକ ସ୍ୱୟଂ ସହାୟକ ଗୋଷ୍ଠୀଙ୍କୁ ଋଣ ଅନୁବନ୍ଧିତ କରାଯାଇଛି ।

### ୨. ମହାତ୍ମାଗାନ୍ଧୀ ଜାତୀୟ ଗ୍ରାମୀଣ ନିଶ୍ଚିତ କର୍ମ ନିଯୁକ୍ତି ଯୋଜନା

ମହାତ୍ମା ଗାନ୍ଧୀ ଜାତୀୟ ଗ୍ରାମୀଣ ନିଶ୍ଚିତ କର୍ମ ନିଯୁକ୍ତି ଆଇନ୍ - ୨୦୦୫ ଅନୁସାରେ, ଗ୍ରାମାଞ୍ଚଳରେ ବାସ କରୁଥିବା ଏବଂ ସ୍ୱେଚ୍ଛାକୃତ ଭାବେ ଅଣକୁଶଳୀ କାର୍ଯ୍ୟ କରିବାକୁ ଚାହୁଁଥିବା ସମସ୍ତ ପରିବାରକୁ ଗୋଟିଏ ଆର୍ଥିକ ବର୍ଷରେ ୧୦୦ ଦିନର ନିଶ୍ଚିତ କାର୍ଯ୍ୟ ଯୋଗାଇ ଦିଆଯାଉଛି। ଏହି ଆଇନ୍ ପ୍ରଣୟନ ଦ୍ୱାରା ସରକାର ଗ୍ରାମୀଣ ପରିବାରକୁ ସାମାଜିକ ସୁରକ୍ଷା ପ୍ରଦାନ ସହିତ ରୋଜଗାର ଦାବି ପାଇଁ କ୍ଷମତା ପ୍ରଦାନ କରିଅଛନ୍ତି । ଏହା ଲୋକମାନଙ୍କୁ କାମ କରିବାର ଅଧିକାର ପ୍ରଦାନ କରି ଦେଶର ଅର୍ଥନୈତିକ ଅଭିବୃଦ୍ଧି ଏବଂ ଦାରିଦ୍ର୍ୟ ହ୍ରାସ କରିବାରେ ସହାୟକ ହୋଇଛି। ଏହି ବିଧି ପ୍ରଣୟନ ଯୋଗୁଁ ଗ୍ରାମାଞ୍ଚଳରେ ସାମାଜିକ ସ୍ଥାୟୀ ସମ୍ପତ୍ତି ସୃଷ୍ଟି ହେବା ସହିତ, 'ମହିଳା ସଶକ୍ତିକରଣ' ହୋଇପାରିଛି। ଓଡିଶାରେ ଏହି ଯୋଜନା ୧୯ ଗୋଟି ଜିଲ୍ଲାରେ ତା.୦୨.୦୨.୨୦୦୬ରିଖରେ ଆରମ୍ଭ ହୋଇଥିଲା ଏବଂ ତା.୦୧.୦୪.୨୦୦୮ରିଖଠାରୁ ସମସ୍ତ ୩୦ ଗୋଟି ଜିଲ୍ଲାରେ କାର୍ଯ୍ୟକାରୀ ହେଉଅଛି।

## ୨୦୧୭-୧୮ ଆର୍ଥିକ ବର୍ଷରେ ସଫଳତା (ତା ୩୧.୦୧.୨୦୧୮ ରିଖ ସୁଦ୍ଧା)

୨୦୧୭-୧୮ ଆର୍ଥିକ ବର୍ଷ ନିମନ୍ତେ କେନ୍ଦ୍ର ସରକାର ୨୭୯୮.୩୭ କୋଟି ଟଙ୍କାର ଶ୍ରମ ବଜେଟକୁ ଅନୁମୋଦନ କରିଅଛନ୍ତି, ଯାହାଦ୍ୱାରା ୧୯.୦୦ ଲକ୍ଷ ପରିବାରଙ୍କୁ କର୍ମ ନିଯୁକ୍ତି ପ୍ରଦାନ କରି ୯୦୦ ଲକ୍ଷ ଶ୍ରମ ଦିବସ ସୃଷ୍ଟି କରିବାକୁ ଲକ୍ଷ୍ୟ ରଖାଯାଇଅଛି।

- ୨୦୧୭-୧୮ ଆର୍ଥିକ ବର୍ଷରେ ୯୦୦ ଲକ୍ଷ ଶ୍ରମ ଦିବସ ସୃଷ୍ଟି କରାଯିବାର ଲକ୍ଷ୍ୟ ରଖାଯାଇଥିବା ବେଳେ ତା ୩୧.୦୧.୨୦୧୮ ରିଖ ସୁଦ୍ଧା, ୬୭୯.୬୬ ଲକ୍ଷ ଶ୍ରମ ଦିବସ ସୃଷ୍ଟି କରାଯାଇଅଛି।
- ୨୦୧୭-୧୮ ଆର୍ଥିକ ବର୍ଷରେ ସମୁଦାୟ ଉପଲବ୍ଧ ଅର୍ଥ ୧୯୩୪.୩୨ କୋଟି ଟଙ୍କା ମଧ୍ୟରୁ ତା ୩୧.୦୧.୨୦୧୮ ରିଖ ସୁଦ୍ଧା ୧୯୨୪.୧୦ କୋଟି ଟଙ୍କା ଖର୍ଚ୍ଚ କରାଯାଇଅଛି।
- ରେଜେଷ୍ଟ୍ରିଭୁକ୍ତ ହୋଇଥିବା ୬୨.୮୮ ଲକ୍ଷ ପରିବାର ମଧ୍ୟରୁ ୬୧.୯୫ ଲକ୍ଷ ପରିବାରଙ୍କୁ ଜବକାର୍ଡ ପ୍ରଦାନ କରାଯାଇଛି।
- କାମ ପାଇଁ ଆବେଦନ କରିଥିବା ୨୨.୨୯ ଲକ୍ଷ ପରିବାର ମଧ୍ୟରୁ ୧୯.୪୨ ଲକ୍ଷ ପରିବାରଙ୍କୁ କର୍ମ ନିଯୁକ୍ତି ଯୋଗାଇ ଦିଆଯାଇଛି ।
- ୨୦୧୭-୧୮ ଆର୍ଥିକ ବର୍ଷରେ (ତା ୩୧.୦୧.୨୦୧୮ ରିଖ ସୁଦ୍ଧା) ୨୫, ୩୬୩ ପରିବାର ୧୦୦ ଦିନ କାର୍ଯ୍ୟ କରିଛନ୍ତି।
- ୮,୬୪,୧୭୭ ପ୍ରକଳ୍ପ ମଧ୍ୟରୁ ୧,୭୨,୫୮୦ ପ୍ରକଳ୍ପ ସମ୍ପୂର୍ଣ୍ଣ କରାଯାଇଛି।
- ମୋଟ ସୃଷ୍ଟି ହୋଇଥିବା ୬୭୯.୬୬ ଲକ୍ଷ ଶ୍ରମଦିବସ ମଧ୍ୟରୁ, ମହିଳାମାନଙ୍କ ଦ୍ୱାରା ୨୮୩.୨୬ ଲକ୍ଷ ଶ୍ରମ ଦିବସ ସୃଷ୍ଟି କରାଯାଇଛି, ଯାହାକି ଶତକଡା ୪୨ ପ୍ରତିଶତ ।
- ଅନୁସୂଚିତ ଜାତି ଓ ଅନୁସୂଚିତ ଜନଜାତିଙ୍କ ଦ୍ୱାରା ଯଥାକ୍ରମେ ୧୧୪.୫୩ ଲକ୍ଷ (ଶତକଡା ୧୭ ପ୍ରତିଶତ) ଏବଂ ୨୪୮.୨୭ ଲକ୍ଷ (ଶତକଡା ୩୬ ପ୍ରତିଶତ) ଶ୍ରମ ଦିବସ ସୃଷ୍ଟି କରାଯାଇଛି।
- ମହିଳା ଓ ଶିଶୁ କଲ୍ୟାଣ ବିକାଶ ବିଭାଗ ସହଭାଗିତାରେ MGNREGS ଯୋଜନାରେ ଅଙ୍ଗନୱାଡ଼ି କେନ୍ଦ୍ର ନିର୍ମାଣ କରାଯାଉଛି, ଯେଉଁଥିରେ MGNREGSରୁ ୫ ଲକ୍ଷ ଟଙ୍କା ଏବଂ ମହିଳା ଓ ଶିଶୁ କଲ୍ୟାଣ ବିକାଶ ତରଫରୁ ୨ ଲକ୍ଷ ଟଙ୍କା ପ୍ରଦାନ କରାଯାଉଛି।
- ତା ୩୧.୦୧.୨୦୧୮ ରିଖ ସୁଦ୍ଧା, ୨୩୬୫ଟି ଅଙ୍ଗନୱାଡ଼ି କେନ୍ଦ୍ର ନିର୍ମାଣ ସମ୍ପୂର୍ଣ୍ଣ କରାଯାଇଛି।
- ୨୦୧୭-୧୮ ଆର୍ଥିକ ବର୍ଷରେ (ତା ୩୧.୦୧.୨୦୧୮ ରିଖ ସୁଦ୍ଧା) ୧୫୦୦୦ ଫାର୍ମ ପଣ୍ଡ ଖନନ ଲକ୍ଷ୍ୟ ରଖାଯାଇଥିବା ବେଳେ ୩୭୦୪ ଗୋଟି ଫାର୍ମ ପଣ୍ଡ ଖନନ କରାଯାଇଅଛି।
- କୃଷି ଏବଂ କୃଷିଭିତ୍ତିକ କାର୍ଯ୍ୟରେ ଶତକଡା ୬୦ ପ୍ରତିଶତ ଖର୍ଚ୍ଚ ଲକ୍ଷ୍ୟ ରଖାଯାଇଥିବାବେଳେ ଶତକଡା ୭୩.୫୭ ପ୍ରତିଶତ ଖର୍ଚ୍ଚ କରାଯାଇଛି।
- ପ୍ରାକୃତିକ ସମ୍ବଳ ପରିଚାଳନାରେ ଶତକଡା ୬୦ ପ୍ରତିଶତ ଖର୍ଚ୍ଚ ଲକ୍ଷ୍ୟ ରଖାଯାଇଥିବା ବେଳେ ତା.୩୧.୦୧.୨୦୧୮ ରିଖ ସୁଦ୍ଧା, ମୋଟ ଖର୍ଚ୍ଚର ଶତକଡା ୪୨.୦୫ ପ୍ରତିଶତ ଖର୍ଚ୍ଚ କରାଯାଇଛି।

- ରାସ୍ତା ପାର୍ଶ୍ୱ ବନୀକରଣରେ ୪୦୦୦ RKM ଲକ୍ଷ୍ୟ ରଖାଯାଇଥିବା ବେଳେ ୪୪୩୮.୩୫ RKM ବନୀକରଣ କରାଯାଇଛି ।
- ୨୦୧୭-୧୮ ଆର୍ଥିକ ବର୍ଷରେ(ତା ୩୧.୦୧.୨୦୧୮ ରିଖ ସୁଦ୍ଧା) ୩୬୩୬ ପୋଖରୀର ପୁନରୁଦ୍ଧାର କରାଯାଇଛି ।

**ନୂତନ ପଦକ୍ଷେପ**

- ୨୦୧୭-୧୮ ଆର୍ଥିକ ବର୍ଷର ଶ୍ରମ ଅଟକଳ ଓ ପ୍ରକଳ୍ପ ଖସଡା ଲୋକଙ୍କ ସହଭାଗିତାରେ 'IPPE mode'ରେ ତିଆରି କରାଯାଇଅଛି।
- Ne-FMS ମାଧ୍ୟମରେ ତା ୦୧-୦୪-୨୦୧୬ ରିଖଠାରୁ ମଜୁରି ବାବଦ ପ୍ରାପ୍ୟ ସିଧାସଳଖ ଶ୍ରମିକମାନଙ୍କ ବ୍ୟାଙ୍କ ଖାତାକୁ ଯାଉଛି।
- ୨୦୧୭-୧୮ ଆର୍ଥିକ ବର୍ଷ ମଧ୍ୟରେ ପ୍ରାୟ ୪.୫୦ ଲକ୍ଷ ଚାରା ରୋପଣ ବିଭିନ୍ନ ସ୍କୁଲ, ମହାବିଦ୍ୟାଳୟ ଓ ଅଙ୍ଗନଓ୍ୱାଡି କେନ୍ଦ୍ର ତଥା ଗ୍ରାମପଞ୍ଚାୟତ ପରିସରରେ ଗ୍ରାମପଞ୍ଚାୟତମାନଙ୍କ ମାଧ୍ୟମରେ ସମଗ୍ର ରାଜ୍ୟରେ କରାଯାଇଛି।
- ୮, ୩୩, ୫୭୬ ଗୋଟି ପ୍ରକଳ୍ପକୁ Geo-tagging କରାଯାଇଛି।
- ୫୨.୮୮ ଲକ୍ଷ Active worker ମଧ୍ୟରୁ ୪୭.୭୮ ଲକ୍ଷ ଶ୍ରମିକଙ୍କୁ ଆଧାର ସହିତ ସଂଯୋଗ କରାଯାଇଛି। ଏହା ଶତକଡା ୯୦.୩୬ ପ୍ରତିଶତ ଅଟେ।
- ମନରେଗା ଯୋଜନାରେ କାର୍ଯ୍ୟ କରୁଥିବା ବୈଷୟିକ କର୍ମଚାରୀଙ୍କ କାର୍ଯ୍ୟ ଦକ୍ଷତା ବୃଦ୍ଧି ନିମନ୍ତେ 'ସାମର୍ଥ୍ୟ' ପ୍ରଶିକ୍ଷଣ ପ୍ରଦାନ କରାଯାଇଛି। ୩୨୦ ଜଣ DTRT(District Technical Resource Team) ଏବଂ ୨୬୩୯ BTRT(Block Technical Resource Team)ଙ୍କୁ ପ୍ରଶିକ୍ଷଣ ପ୍ରଦାନ କରାଯାଇଛି।
- ୬୧,୯୫,୯୪୪ ଜବ୍ କାର୍ଡ ମଧ୍ୟରୁ ୬୧,୫୦,୦୪୬ଟି ଜବ୍ କାର୍ଡ (୯୯.୩%)ର ସତ୍ୟତା ଯାଞ୍ଚ କରାଯାଇସାରିଛି। ସେହିପରି ତା. ୧୮.୦୧.୨୦୧୮ ରିଖ ସୁଦ୍ଧା ୩୨୪୫୫୫୩ଟି ସକ୍ରିୟ ଜବ କାର୍ଡ ମଧ୍ୟରୁ ୩୨,୩୬,୬୨୬ଟି ସକ୍ରିୟ ଜବ କାର୍ଡ ଯାଞ୍ଚ କରାଯାଇସାରିଛି। ଘର ଘର ବୁଲି ସତ୍ୟତା ଯାଞ୍ଚ ପ୍ରକ୍ରିୟା ବେଳେ ପ୍ରାୟ ୫ ଲକ୍ଷ ଜବ କାର୍ଡକୁ କେନ୍ଦ୍ର ସରକାରଙ୍କ ନିୟମ ଅନୁଯାୟୀ ଉପଯୁକ୍ତ ପ୍ରକ୍ରିୟା ମାଧ୍ୟମରେ କାଟି ଦିଆଯାଇଅଛି।
- ୧୫ ଦିନଠାରୁ ଅଧିକ ଦିନ ଧରି ପ୍ରାପ୍ୟ ନ ହୋଇ ପଡି ରହିଥିବା wage list (ମଜୁରି ତାଲିକା) ଉପରେ ପ୍ରାପ୍ୟ ପ୍ରଦାନ କରିବା ନିମନ୍ତେ ରାଜ୍ୟ ସ୍ତରରେ ଏକ ସ୍ୱତନ୍ତ୍ର ପର୍ଯ୍ୟାଲୋଚନା ଦଳ ଗଠନ କରାଯାଇଛି। ଜୁଲାଇ ୨୦୧୭ଠାରୁ ଆରମ୍ଭ ହୋଇଥିବା ଏହି ପ୍ରକ୍ରିୟା ଦ୍ୱାରା ପଡ଼ିରହିଥିବା wage list ର ସଂଖ୍ୟାକୁ ଶୂନ୍ୟକୁ ଅଣାଯାଇପାରିଛି।
- ଓଡିଶା ହେଉଛି ଦେଶର ପ୍ରଥମ ରାଜ୍ୟ, ଯେଉଁଠାରେ କି ଗୋଟିଏ ହେଲେ ୧୫ ଦିନରୁ ଊର୍ଦ୍ଧ୍ୱ wage list (ମଜୁରି ତାଲିକା) ନାହିଁ।
- ୧୫ ଦିନ ମଧ୍ୟରେ ସମୁଚିତ ମଜୁରି ପ୍ରଦାନ ୮୨.୦୬% ବୃଦ୍ଧି ପାଇଛି (ତା.୩୧.୦୧.୨୦୧୮ରିଖ ସୁଦ୍ଧା)।
- Socio Economic Caste Census (SECC) ଅନୁଯାୟୀ ଓଡିଶାରେ ମୋଟ୍ ଭୂମିହୀନ ସାମୟିକ ଶ୍ରମିକ ସଂଖ୍ୟା ହେଉଛି ୩୧.୯୬ ଲକ୍ଷ। ସେଥିମଧ୍ୟରୁ ୨୯.୧୪ ଲକ୍ଷ ପରିବାର (୯୨%) ଙ୍କର ସର୍ଭେ କାର୍ଯ୍ୟ ସରିଯାଇଛି। ମୋଟ ୭୩୮୨୨ (୫୮%) ଇଚ୍ଛୁକ ପରିବାର ମଧ୍ୟରୁ ୪୩୦୦୩ ପରିବାରଙ୍କୁ ଜବକାର୍ଡ ଯୋଗାଇ ଦିଆଯାଇଅଛି।
- ମହାତ୍ମା ଗାନ୍ଧୀ ଜାତୀୟ ଗ୍ରାମୀଣ ନିଶ୍ଚିତ କର୍ମ ନିଯୁକ୍ତି ଯୋଜନାରେ ଉତ୍ତମ ପ୍ରଶାସନ କାର୍ଯ୍ୟ ପ୍ରକ୍ରିୟା କାର୍ଯ୍ୟକାରୀ କରିବା ନିମନ୍ତେ ପଦକ୍ଷେପ ନିଆଯାଇଅଛି। ଜାନୁଆରୀ ୨୦୧୮ ତା. ୩ ଓ ୪ ରିଖରେ MGNREGS Odisha Society

Building ସମ୍ମିଳନୀ କକ୍ଷରେ ଦିନିକିଆ କର୍ମଶାଳାର ଆୟୋଜନ କରାଯାଇ ପ୍ରତ୍ୟେକ ଜିଲ୍ଲାରୁ ଅନ୍ୟୁନ ଜଣେ MGNREGS Coordinator, ଜଣେ ଅତିରିକ୍ତ ପ୍ରୋଗ୍ରାମ ଅଫିସର ବା APO, ଜଣେ JE/GPTA ଏବଂ ଜଣେ GRS ବା ଗ୍ରାମ ରୋଜଗାର ସେବକଙ୍କୁ ଉତ୍ତମ ପ୍ରଶାସନ କାର୍ଯ୍ୟ ବା Good Governanceର ବିଭିନ୍ନ ପରିମାପକ ଯଥା ୭ ଗୋଟି ରେଜିଷ୍ଟର, Case Recordର ରକ୍ଷଣାବେକ୍ଷଣ, ସର୍ବସାଧାରଣଙ୍କ ନିମନ୍ତେ ସୂଚନା ଫଳକ ସ୍ଥାପନ ଏବଂ ଜବକାର୍ଡର ସତ୍ୟତା ଯାଞ୍ଚ ଓ ଅପ୍‌ଡେଟ୍ କରିବା ସଂପର୍କରେ ତାଲିମ ଦିଆଯାଇଛି ।

- ଏକ ନୂଆ ଢାଞ୍ଚାରେ ୩୨ ଲକ୍ଷ ଜବକାର୍ଡ ଛପାଇବା ନିମନ୍ତେ ପ୍ରେସକୁ କାର୍ଯ୍ୟାଦେଶ ଦିଆଯାଇସାରିଛି । ଜବକାର୍ଡଧାରୀମାନଙ୍କୁ ପୁରୁଣା ଜବକାର୍ଡ ପରିବର୍ତ୍ତେ ଏହି ନୂତନ ଜବକାର୍ଡ ପ୍ରଦାନ କରାଯିବ ।

### ୩. ଗୋପବନ୍ଧୁ ଗ୍ରାମୀଣ ଯୋଜନା:

ଏହି ଯୋଜନା ରାଜ୍ୟର ସମସ୍ତ ଜିଲ୍ଲାକୁ ଅତିରିକ୍ତ ଉନ୍ନୟନ ସହାୟତା ଯୋଗାଇଥାଏ । ଜିଲ୍ଲାର ପ୍ରତ୍ୟେକ ରାଜସ୍ୱ ଗ୍ରାମକୁ ବିଜୁଳି, ସଡକ ଓ ପାଣି ପରି ଆବଶ୍ୟକୀୟ ଗ୍ରାମ୍ୟ ଭିତ୍ତିଭୂମି ଯୋଗାଇଦେବା ଏହି ଯୋଜନାର ମୌଳିକ ଲକ୍ଷ୍ୟ ।

ଏହା ଏକ ରାଜ୍ୟ ଯୋଜନା, ଯାହାକି ୨୦୦୬–୦୭ ମସିହାରେ କାର୍ଯ୍ୟକାରୀ ହୋଇଥିଲା ଏବଂ ଏଥିନିମନ୍ତେ ରାଜ୍ୟ ସରକାର ସମସ୍ତ ପାଣ୍ଠି ଯୋଗାଇ ଦେଇଥାନ୍ତି ।

ଏହି ଯୋଜନାରେ ୬୯,୯୩୫.୦୯ ଲକ୍ଷ ଟଙ୍କାର ମଂଜୁର ପାଣ୍ଠି ଥିବା ସ୍ଥଳେ ଚଳିତ ୨୦୧୭–୧୮ ଆର୍ଥିକ ବର୍ଷର ଜାନୁଆରୀ ୨୦୧୮ ପର୍ଯ୍ୟନ୍ତ ୨୯,୧୭୭.୦୫ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ଖର୍ଚ୍ଚ ହୋଇଛି । ଏହା ଶତକଡା ୪୨ ପ୍ରତିଶତ ଅଟେ । ୨୪,୫୦୧ଟି କାର୍ଯ୍ୟ ସଂପନ୍ନ ହେବା ପାଇଁ ଲକ୍ଷ୍ୟଧାର୍ଯ୍ୟ ଥିବା ସ୍ଥଳେ ୧୩,୦୮୧ ସଂଖ୍ୟକ କାର୍ଯ୍ୟ ସଂପୂର୍ଣ୍ଣ ହୋଇଛି ।

### ୪. ପାନୀୟ ଜଳ

୨୦୧୭–୧୮ ବର୍ଷରେ ୨୦୧୮ ଜାନୁଆରୀ ମାସ ପର୍ଯ୍ୟନ୍ତ ଜାତୀୟ ଗ୍ରାମୀଣ ପାନୀୟ ଜଳ ଯୋଗାଣ ପ୍ରକଳ୍ପରେ ବିନିଯୋଗ ପାଇଁ ବଜେଟ୍ ବ୍ୟବସ୍ଥା ।

**ଜାତୀୟ ଗ୍ରାମୀଣ ପାନୀୟ ଜଳ ଯୋଗାଣ ପ୍ରକଳ୍ପ**

( ପାଇପ୍ ଜଳ ଯୋଗାଣ, ଜଳ ଉତ୍ସ ଏବଂ ପୋଷଣୀୟ ଇତ୍ୟାଦି )

| | |
|---|---|
| ବଜେଟ୍ ବ୍ୟବସ୍ଥା, ୨୦୧୭–୧୮ | ଟ.୩୦୦୦୦.୦୦ ଲକ୍ଷ |
| ବିନିଯୋଗ | ଟ.୧୧୪୫୧.୦୦ ଲକ୍ଷ |

# ୨୦୧୮ ଜାନୁଆରୀ ସୁଦ୍ଧା ହାସଲ କରାଯାଇଥିବା ସଫଳତା

| କ୍ର. | କାର୍ଯ୍ୟକ୍ରମ | ସଫଳତା | |
|---|---|---|---|
| | | ମାସ | ସମୁଦାୟ |
| ୧. | ଗ୍ରାମ୍ୟ ପାଇପ୍ ଜଳ ଯୋଗାଣ ପ୍ରକଳ୍ପ ସ୍ଥାପନ | ୧୬ | ୧୦୫ |
| ୨. | ବସତିଗୁଡ଼ିକରେ ଜଳ ଉତ୍ସ (ନଳକୂପ/ପରିମଳ କୂପ)ସ୍ଥାପନ | ୨୯୫ | ୪୨୦୧ |
| ୩. | ଗ୍ରାମ୍ୟ ବିଦ୍ୟାଳୟଗୁଡ଼ିକରେ ଜଳ ଉତ୍ସ ( ନଳକୂପ/ପରିମଳ କୂପ)ସ୍ଥାପନ | ୩ | ୨୯ |
| ୪. | ଅଙ୍ଗନୱାଡ଼ି କେନ୍ଦ୍ରଗୁଡ଼ିକରେ ଜଳ ଉତ୍ସ (ନଳକୂପ/ପରିମଳ କୂପ) ସ୍ଥାପନ | ୮ | ୩୪ |

**୫. ଗ୍ରାମାଞ୍ଚଳ ଗୃହ ନିର୍ମାଣ କାର୍ଯ୍ୟକ୍ରମ**

କ) ପ୍ରଧାନମନ୍ତ୍ରୀ ଆବାସ ଯୋଜନା : ୨୦୧୭-୧୮ ଆର୍ଥିକ ବର୍ଷରେ ୨୦୧୮ ମସିହା ଜାନୁଆରୀ ମାସ ସୁଦ୍ଧା ଉପଲବ୍ଧ ୫୦୬୬୮୦.୦୦ ଲକ୍ଷ ଟଙ୍କା ମଧ୍ୟରୁ ୪୩୬୯୩୩.୦୦ ଲକ୍ଷ ଟଙ୍କା ବିନିଯୋଗ କରାଯାଇଛି । ଏହା ଶତକଡ଼ା ୮୬ ପ୍ରତିଶତ ଅର୍ଥ ବିନିଯୋଗ ଅଟେ । ଲକ୍ଷ୍ୟଧାର୍ଯ୍ୟ ହୋଇଥିବା ୮୪୪୪୧୮ଟି ଗୃହ ମଧ୍ୟରୁ ୨୬୮୯୦୬ଟିର ନିର୍ମାଣ କାର୍ଯ୍ୟ ଶେଷ ହୋଇଛି ।

ଖ) ବିଜୁ ପକ୍କା ଘର: ୨୦୧୭-୧୮ ଆର୍ଥିକ ବର୍ଷର ଜାନୁଆରୀ ମାସ ୨୦୧୮ ସୁଦ୍ଧା ଉପଲବ୍ଧ ୮୭୩୩୬.୦୦ ଲକ୍ଷ ଟଙ୍କା ମଧ୍ୟରୁ ୪୬୪୬୪.୦୦ ଲକ୍ଷ ଟଙ୍କା ବିନିଯୋଗ କରାଯାଇଅଛି । ଏହା ଶତକଡ଼ା ୫୩ ପ୍ରତିଶତ ଅର୍ଥ ବିନିଯୋଗ ଅଟେ । ଲକ୍ଷ୍ୟଧାର୍ଯ୍ୟ ହୋଇଥିବା ୯୬୫୬୩ଟି ଗୃହ ମଧ୍ୟରୁ ୪୧୧୧୫ଟିର ନିର୍ମାଣ କାର୍ଯ୍ୟ ଶେଷ ହୋଇଛି ।

ଗ) ବିଜୁ ପକ୍କା ଘର (ଖଣି): ୨୦୧୭-୧୮ ଆର୍ଥିକ ବର୍ଷର ଜାନୁଆରୀ ମାସ ୨୦୧୮ ସୁଦ୍ଧା ଉପଲବ୍ଧ ୨୫୫୩୧.୦୦ ଲକ୍ଷ ଟଙ୍କା ମଧ୍ୟରୁ ୧୨୭୩୧.୦୦ ଲକ୍ଷ ଟଙ୍କା ବିନିଯୋଗ କରାଯାଇଛି । ଏହା ଶତକଡ଼ା ୫୦ ପ୍ରତିଶତ ଅର୍ଥ ବିନିଯୋଗ ଅଟେ । ଲକ୍ଷ୍ୟଧାର୍ଯ୍ୟ ହୋଇଥିବା ୨୭୧୮୪ଟି ଗୃହ ମଧ୍ୟରୁ ୧୦୪୫୫ଟିର ନିର୍ମାଣ କାର୍ଯ୍ୟ ଶେଷ ହୋଇଛି ।

ଘ) ନିର୍ମାଣ ଶ୍ରମିକ ପକ୍କା ଘର ଯୋଜନା: ୨୦୧୭-୧୮ ଆର୍ଥିକ ବର୍ଷର ଜାନୁଆରୀ ମାସ ୨୦୧୮ ସୁଦ୍ଧା ଉପଲବ୍ଧ ୯୨୭୯.୦୦ ଲକ୍ଷ ଟଙ୍କା ମଧ୍ୟରୁ ୪୦୪୮.୦୦ ଲକ୍ଷ ଟଙ୍କା ବିନିଯୋଗ କରାଯାଇଅଛି । ଏହା ଶତକଡ଼ା ୪୪ ପ୍ରତିଶତ ଅର୍ଥ ବିନିଯୋଗ ଅଟେ । ଲକ୍ଷ୍ୟଧାର୍ଯ୍ୟ ହୋଇଥିବା ୭୯୬୪ଟି ଗୃହ ମଧ୍ୟରୁ ୨୩୫୫ଟିର ନିର୍ମାଣ କାର୍ଯ୍ୟ ଶେଷ ହୋଇଛି ।

ଯୋଜନାର କାର୍ଯ୍ୟାନ୍ୱୟନ ଦିଗରେ ରାଜ୍ୟ ସରକାରଙ୍କ ତତ୍ପରତା ଉପରୋକ୍ତ ସଫଳତାରୁ ସ୍ପଷ୍ଟ ।

ସୂଚନା ଅଧିକାରୀ
ସୂଚନା ଓ ଲୋକସମ୍ପର୍କ ବିଭାଗ

# ବିଜୁ ପଟ୍ଟନାୟକ : ଏକ ତତ୍ତ୍ୱ

ଡକ୍ଟର ଧରଣୀଧର ରାଉତ

ଶତାବ୍ଦୀଟିଏ ଯାଉଛି ପୁଣି ଶତାବ୍ଦୀଟିଏ ଆସିବ, କିନ୍ତୁ ବିଜୁ ପଟ୍ଟନାୟକଙ୍କ ଭଳି ସ୍ୱାଭିମାନପୂର୍ଣ୍ଣ ମର୍ଯ୍ୟାଦାବନ୍ତ ବିରାଟ ଅନୁଷ୍ଠାନ ମିଳିବ ନାହିଁ ଏ ମାଟିରେ ।

ଏ ଜାତି ବକ୍ଷରେ ନୂତନ ସୂର୍ଯ୍ୟର ଅଭ୍ୟୁଦୟ ହୁଏ । ତାହାର ଗରିମା ମଣ୍ଡିତ ଇତିହାସ ଆମେ ଅଧ୍ୟୟନ କରୁ । ଶୌର୍ଯ୍ୟ, ବୀର୍ଯ୍ୟ ଅମିତ ପରାକ୍ରମଶାଳୀ ପ୍ରଚଣ୍ଡ ପ୍ରତିଭାର ଉଜ୍ଜ୍ୱଳ ସ୍ତମ୍ଭ ମହାମେଘବାହନ ଐର ଖାରବେଳ, ଯାହାର ଶାଣିତ ପୌରୁଷ ଏବେ ମଧ୍ୟ ଓଡ଼ିଆ ଯୁବକର ଧମନୀର ରକ୍ତ ପ୍ରବାହରେ ଶିହରଣ ତୋଳେ । ସେଇଭଳି ଜଣେ ଶ୍ରେଷ୍ଠ ମଣିଷ ଥିଲେ ବିଜୁ ପଟ୍ଟନାୟକ । ଛାଡିଦେଇ ଯାଇଛନ୍ତି, ଏ ମାଟିର ଉତ୍ତରପୁରୁଷ ପାଇଁ ସ୍ୱାଭିମାନର ପ୍ରଚଣ୍ଡ ତତ୍ତ୍ୱ ।

ବିଜୁ ବାବୁ ଏ ମାଟିରେ ମଣିଷ ନ ଥିଲେ, ସେ ଥିଲେ ଏ ଜାତିର ବିରାଟ ଅନୁଷ୍ଠାନ । ଆଜି କିନ୍ତୁ ସେ ଆମ ପାଇଁ ଆଉ ଅନୁଷ୍ଠାନ ନୁହଁନ୍ତି । ସେ ଏକ ତତ୍ତ୍ୱ । କେତେ ଗର୍ବ, ଗୌରବ, ଗରିମାମୟ ତାଙ୍କର ଜୀବନ ଇତିହାସ । ଭାବି ହୁଏନା, କିନ୍ତୁ ସତ୍ୟ । ଦୁଃସାହସର ଅନ୍ୟନାମ ବିଜୁ ପଟ୍ଟନାୟକ, ଏହି ତତ୍ତ୍ୱ ଆଜି ସମଗ୍ର ଯୁବ ମାନସରେ ଆନ୍ଦୋଳିତ । ପ୍ରଚଣ୍ଡ ସ୍ୱାଭିମାନ ଆଉ ଦୁଃସାହସର ସେ ଥିଲେ ପୂର୍ଣ୍ଣ ଅବତାର । ଏହି ତତ୍ତ୍ୱ ଆମ ଜୀବନର ମୂଳମନ୍ତ୍ର ହେଲେ ଆମେ ବିଜୁ ପଟ୍ଟନାୟକଙ୍କର ଦାୟାଦ ରୂପେ ଗର୍ବ କରିପାରିବା । ତାଙ୍କର ଅମର ଆତ୍ମା ସ୍ୱର୍ଗରେ ଥାଇ ଶାନ୍ତି ଲାଭ କରିପାରିବ ।

ପୁଣ୍ୟଶ୍ଳୋକ, ଏ ମାଟିର ପ୍ରବାଦ ପୁରୁଷ, ଏ ମହାନ ଜାତିର ଗୌରବ, ଏ ଶତାବ୍ଦୀର ଶ୍ରେଷ୍ଠ ମାନବବାଦୀ ବିଜୁ ପଟ୍ଟନାୟକ, ହିମାଚଳଠାରୁ ସୀମାଚଳ ପର୍ଯ୍ୟନ୍ତ ଆରବ ସାଗରର ଫେନିଳ ତରଙ୍ଗଠୁଁ ବଙ୍ଗପୋସାଗରର ବେଳାଭୂମି ପର୍ଯ୍ୟନ୍ତ ନିଜ ଜୀବନର ଅପରାଜୟର ଇତିହାସ କାଳବକ୍ଷରେ ଅଲିଭା ଅକ୍ଷରରେ ଲିପିବଦ୍ଧ କରିଯାଇଛନ୍ତି, ପାର୍ଥିବ ଶରୀରରେ ସେ ଅନ୍ତର୍ନିହିତ କିନ୍ତୁ ଯଶୋଦେହରେ ସେ ଆୟୁଷ୍ମାନ । ଯୁଗ ଯୁଗ ଧରି ମଣିଷ ଜାତିର ଇତିହାସରେ ସେ ଅନନ୍ୟ ।

କଳିଙ୍ଗର ସୂର୍ଯ୍ୟ ବିଜୁ ପଟ୍ଟନାୟକ ଥିଲେ ପ୍ରଚଣ୍ଡ ପ୍ରତିଭାର ଅଧିକାରୀ । ତାଙ୍କର ମହାନ୍ ପ୍ରତିଭା, ଏ ଜାତି ପାଇଁ ତାଙ୍କର କର୍ମନିଷ୍ଠ ଆତ୍ମୋତ୍ସର୍ଗ ଓ ପ୍ରଭାଦୀପ୍ତ କାହାଣୀର ବର୍ଣ୍ଣମାଳା ପ୍ରତି ଭାରତୀୟଙ୍କ ହୃଦୟରେ ପ୍ରତିଭାତ ।

ମୃତ୍ୟୁର କଷଟି ପଥରରେ ଜୀବନର ସ୍ୱର୍ଣ୍ଣ ଦ୍ୟୁତି ଫୁଟେ । ବିଜୁ ପଟ୍ଟନାୟକଙ୍କର ମୃତ୍ୟୁ ତାହାର ଏକ ଜ୍ୱଳନ୍ତ ନିଦର୍ଶନ । ବିଜୁ ବାବୁଙ୍କର ଅନ୍ତିମ ଯାତ୍ରାରେ ଜନ ସମୁଦ୍ରର ଯେଉଁ ଲୁହର ତରଙ୍ଗ ଖେଳୁଥିଲା, ଭାଗବତକାର ଜଗନ୍ନାଥ ଦାସଙ୍କର ବାଣୀ ତାହାର ସାର୍ଥକତା ପ୍ରତିପାଦନ କରିଛି, 'ପ୍ରାଣୀର ଭଲମନ୍ଦ ବାଣୀ, ମରଣ କାଳେ ତାହା ଜାଣି' ।

'ବିଜୁ ପଟ୍ଟନାୟକ ଅମର ରହେ' ଧ୍ୱନିରେ ସେଦିନ ଗଗନ ପବନ ମୁଖରିତ ହୋଇ ଉଠିଥିଲା, ସିଂହଦ୍ୱାରରୁ ସ୍ୱର୍ଗଦ୍ୱାର ପର୍ଯ୍ୟନ୍ତ ନବୀନ ନିବାସରୁ ନିଳାଦ୍ରୀ ନିବାସ ପର୍ଯ୍ୟନ୍ତ କେବଳ ବିଜୁଗତ ପ୍ରାଣ ଜନସମୁଦ୍ର । ମହୋଦଧିର ଉତ୍ତାଳ ତରଙ୍ଗର ଗମ୍ଭୀର ଧ୍ୱନି ଯେପରି ସ୍ତବ୍ଧ ହୋଇ ଯାଇଥିଲା ।

ବିଜୁ ପଟ୍ଟନାୟକଙ୍କର ସାହସିକତାର ଅଲିଭା ଦୃଷ୍ଟାନ୍ତର ପଟାନ୍ତର ନାହିଁ । ପ୍ରାଚ୍ୟଠାରୁ ପାଶ୍ଚାତ୍ୟ ପର୍ଯ୍ୟନ୍ତ ଏହି ଅମର

ଜୀବନର ତ୍ୟାଗପୂତ କର୍ତ୍ତବ୍ୟ ଓ ଦୃଢ଼ ମନୋବଳର ଅପୂର୍ବ ଅପରାଜୟର କୃତିତ୍ୱ ପାଇଁ ଏ ମାଟି ଧନ୍ୟ ହୋଇଯାଇଛି ।

ଓଡ଼ିଶା ପ୍ରଗତିର ମାନଚିତ୍ରରେ ପ୍ରତିଟି ବିନ୍ଦୁରେ ବିଜୁ ପଟ୍ଟନାୟକଙ୍କର କର୍ମନିଷ୍ଠା, ତ୍ୟାଗ ଅନସ୍ୱୀକାର୍ଯ୍ୟ । ଶିକ୍ଷା, ସ୍ୱାସ୍ଥ୍ୟ, ଗମନାଗମନ, ଶିଳ୍ପର ବିକାଶ ସର୍ବୋପରି କୃଷି ଓ ବୈଷୟିକ ବିଦ୍ୟାର ସାମୂହିକ ଉନ୍ନତି ପାଇଁ ତାଙ୍କର ମହନୀୟ ସେବା ଏ ଜାତି ପାଇଁ ଚିର ସ୍ମରଣୀୟ ହୋଇ ରହିଥିବ ।

ଓଡ଼ିଶାର ଶିଳ୍ପର ବିକାଶ କହିଲେ ବିଜୁ ପଟ୍ଟନାୟକଙ୍କ ନାମ ସ୍ୱତଃ ଉଚ୍ଚାରିତ ହୋଇଯାଏ । ସେ ସ୍ୱପ୍ନ ଦେଖନ୍ତି ଓ ତାକୁ ବାସ୍ତବରେ ମଧ୍ୟ ପରିଣତ କରନ୍ତି । ତାଙ୍କ ପରି ଇତିହାସ ସୃଷ୍ଟି କରିଥିବା ପୁରୁଷ ଏ ମାଟିରେ ଆଉ ଦେଖିବାକୁ ମିଳେନା ।

ଉତ୍କଳର ଅତୀତ ନୌବାଣିଜ୍ୟର ସ୍ମାରକୀ ପାଇଁ ପାରାଦ୍ୱୀପ ବନ୍ଦର, କଳିଙ୍ଗବୀରମାନଙ୍କର ଉତ୍‌ଥାନ ପାଇଁ ସୈନିକ ସ୍କୁଲ, ଶିକ୍ଷାର ବିକାଶ ପାଇଁ ନୈଶ୍ୟ ବିଦ୍ୟାଳୟ, ରିଜିଓନାଲ କଲେଜ, କୃଷିର ବିକାଶ ପାଇଁ କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ, ପ୍ରଗତିକୁ ତ୍ୱରାନ୍ୱିତ କରିବା ପାଇଁ ଏକ୍ସପ୍ରେସ୍ ହାଇୱେ, ଦୈତାରୀରୁ ପାରାଦ୍ୱୀପ, ଉଡାଜାହାଜ କାରଖାନା, ଓ.ଟି.ଏମ୍ ଓ କଳିଙ୍ଗ ଟିଉବସ୍ ପ୍ରଭୃତି କୀର୍ତ୍ତିରାଜି ସଗର୍ବରେ ବିଜୁ ପଟ୍ଟନାୟକଙ୍କ ନାମ ଉଚ୍ଚାରଣ କରୁଛନ୍ତି ।

ଉତ୍କଳ ଜନନୀ ମଣି ମାଣିକ୍ୟର ଗନ୍ତାଘର, ସେହି ଛବି ତାଙ୍କ ମାନସପଟକୁ ସବୁବେଳେ ଆନ୍ଦୋଳିତ କରୁଥିଲା । ଉତ୍କଳର ଖଣିଜ, ଶୈଳ ଅରଣ୍ୟ, ସାଗର, ନଦୀ ସବୁଥିରେ ବିଭବ ପରିପୂର୍ଣ୍ଣ, କେବଳ ତାହାକୁ ଉନ୍ମୋଚନ କଲେ ଚାରି କୋଟି ଓଡ଼ିଆ ଅର୍ଥନୈତିକ ପ୍ରଗତିର ମଧ୍ୟସ୍ଥଳକୁ ଚାଲି ଆସିପାରିବେ । ପ୍ରକୃତି କାର୍ପଣ୍ୟ କରିନାହିଁ ଉତ୍କଳକୁ । କେବଳ ଆମର ହୀନମନ୍ୟତା, ଆଳସ୍ୟ, ଶ୍ରମ କାତରତା ଓ ସର୍ବୋପରି ଆତ୍ମବିଶ୍ୱାସ ଓ ଦୃଢ଼ ମନୋବଳର ଅଭାବ ଏ ଜାତିକୁ ଅନ୍ତଃସାରଶୂନ୍ୟ କରିଦେଉଛି, ଏହାକୁ ହଟାଇବାକୁ ପଡ଼ିବ । ଏହା ଥିଲା ବିଜୁ ପଟ୍ଟନାୟକଙ୍କ ଜୀବନ ମନ୍ତ୍ର ।

ବିଜୁ ପଟ୍ଟନାୟକ କେବଳ ମୁଖ୍ୟମନ୍ତ୍ରୀ ଭାବେ ନୁହେଁ, ବ୍ୟବସ୍ଥାପକ, ସାଂସଦ କିମ୍ବା କେନ୍ଦ୍ରମନ୍ତ୍ରୀ ଭାବେ ଓଡ଼ିଶାର ଜନ ଜୀବନକୁ ଅର୍ଦ୍ଧଶତାବ୍ଦୀ ଧରି ଆନ୍ଦୋଳିତ କରିଆସିଛନ୍ତି । ଓଡ଼ିଶାର ସ୍ୱାଭିମାନକୁ ଅକ୍ଷୁଣ୍ଣ ରଖିବାକୁ ଯେଉଁ ଉଦାତ୍ତ ଆହ୍ୱାନ ଯୁବପ୍ରାଣରେ ତରଙ୍ଗାୟିତ କରିଛନ୍ତି, ସେହି ବର୍ଣ୍ଣମାଳାର ଭାବଧାରା ତାଙ୍କୁ ଆଜିବି ଅମର କରିଛି ।

ଅତୀତର କଳା, ସଂସ୍କୃତି, ଭାସ୍କର୍ଯ୍ୟ, ନୌବାଣିଜ୍ୟ, ଶୌର୍ଯ୍ୟ ଏ ଜାତିକୁ କିପରି ମହିମା ମଣ୍ଡିତ କରିଥିଲା, ବିଶ୍ୱ ଦରବାରରେ ତାହାର ପ୍ରଭାଦୀପ୍ତ ରୂପକୁ ସଂସ୍ଥାପିତ କରିବାରେ ସେ ଥିଲେ ଅଗ୍ରଗଣ୍ୟ ।

ତାଙ୍କ ଜୀବନ ଯେ ଅପରାଜୟର କୀର୍ତ୍ତିସ୍ତମ୍ଭ, ଏଥିରେ ଦ୍ୱିରୁକ୍ତିର ଅବକାଶ ନାହିଁ । ଆଜି ଓଡ଼ିଶାର ଜନମାନସ ତାଙ୍କର ପ୍ରିୟ ବିଜୁବାବୁଙ୍କର ଆଦର୍ଶରେ ଅଭିମନ୍ତ୍ରିତ । ପ୍ରତି ପ୍ରାଣରେ ତାଙ୍କ ଚେତନା ଥିଲା ପ୍ରଜ୍ୱଳିତ । ଅଶୀବର୍ଷ ବୟସରେ ମଧ୍ୟ ଯୁବ ସୁଲଭ ଉଦ୍ଦାମତାରେ ସେ ଥିଲେ ଚଳଚଞ୍ଚଳ ।

ସର୍ବୋପରି ସେ ଥିଲେ ଆମର ସ୍ୱାଭିମାନ, ପରମ୍ପରା, ଐତିହ୍ୟ ଓ ପ୍ରେରଣାର ଉତ୍ସ ।

ସାତାଭାୟା, ରାଜନଗର
କେନ୍ଦ୍ରାପଡ଼ା



# ଓଡ଼ିଶାରେ ସ୍କୁଲ ଓ ଗଣଶିକ୍ଷାର ସୁବର୍ଣ୍ଣ ଯୁଗର ରୂପକାର ବିଜୁବାବୁ

**ଡକ୍ଟର ଶରତ କୁମାର ବିଶ୍ୱାଳ**

ଓଡ଼ିଶାର ଇତିହାସ ଯେଉଁ କେତେଜଣ ଯୋଗଜନ୍ମା ବୀର ପୁରୁଷଙ୍କ କୀର୍ତ୍ତିକୁ ତା'ର ସ୍ୱର୍ଣ୍ଣାଭ ପୃଷ୍ଠାରେ ଲିପିବଦ୍ଧ କରିରଖିଛି, ତନ୍ମଧ୍ୟରୁ ପ୍ରବାଦପୁରୁଷ ବିଜୁ ପଟ୍ଟନାୟକ ଅନ୍ୟତମ । ଖାରବେଳ, ଯଯାତିକେଶରୀ, ଚୋଳଗଙ୍ଗଦେବ, କପିଳେନ୍ଦ୍ର ଦେବ, ମଧୁସୂଦନ ଦାସଙ୍କ ପରି ବିଜୁ ପଟ୍ଟନାୟକ ମଧ୍ୟ ଓଡ଼ିଶାର ଇତିହାସରେ ଏକ ଜାଜ୍ୱଲ୍ୟମାନ ନକ୍ଷତ୍ର ସଦୃଶ ଶୋଭା ପାଉଛନ୍ତି । ଜୀବନସାରା ଓଡିଆଜାତି ଓ ଓଡ଼ିଶାକୁ ଆଗକୁ ନେବା ପାଇଁ ଉଦ୍ୟମ କରି ଶେଷ ନିଃଶ୍ୱାସ ତ୍ୟାଗ କରିଛନ୍ତି । ସେ ହେଉଛନ୍ତି ଜଣେ ଓଡ଼ିଆ, ଯାହାକୁ ଦେଶ ବିଦେଶରେ ଲୋକମାନେ ଜାଣିଥିଲେ । ମୃତ୍ୟୁର ବହୁବର୍ଷ ପରେ ମଧ୍ୟ ସେ ଆଜି ଓଡିଆ ଜାତିକୁ ସମ୍ମୋହନ ମଂତ୍ରରେ ମୋହାଚ୍ଛନ କରିରଖିଛନ୍ତି । ପ୍ରତ୍ୟେକ ଓଡିଆ ଆଜି ତାଙ୍କୁ ମନେ ପକାଇ ଝୁରି ହେଉଛନ୍ତି । ସେ ଥିଲେ ଆଧୁନିକ ଓଡିଶାର ବିନ୍ଧାଣି । ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟାର ବିନିଯୋଗ କରି ଓଡିଶାର ଶିଳ୍ପାୟନକୁ ଏକ ନୂତନ ଦିଗ୍‌ଦର୍ଶନ ତାଙ୍କ ଜୀବନକାଳ ମଧ୍ୟରେ ଦେଇଯାଇଛନ୍ତି । ତାଙ୍କର ସାହସ, ଉଦ୍ୟମ ଓ କାର୍ଯ୍ୟ ବଳରେ ଓଡିଶାକୁ କେବଳ ଜାତୀୟ ସ୍ତରରେ ନୁହେଁ ଆନ୍ତର୍ଜାତିକ ସ୍ତରରେ ମଧ୍ୟ ପରିଚିତ ଓ ପ୍ରତିଷ୍ଠିତ କରିପାରିଛନ୍ତି । ଓଡିଆଜାତି ଓ ଓଡିଆମାଟି ତାଙ୍କର ଅତ୍ୟନ୍ତ ପ୍ରିୟ ଥିଲା । ଶେଷ ନିଃଶ୍ୱାସ ତ୍ୟାଗକଲା ପର୍ଯ୍ୟନ୍ତ ସେ ଓଡିଆମାନଙ୍କର ଉତ୍‌ଥାନ ପାଇଁ ଚିନ୍ତା କରୁଥିଲେ । ବିଜୁବାବୁ ଥିଲେ ପ୍ରବଳ ସାହାସୀ, ଯାହାର ପ୍ରମାଣ ଆମେ ଇଣ୍ଡୋନେସିଆର ସ୍ୱାଧୀନତା ସଂଗ୍ରାମରେ ତାଙ୍କର ଭୂମିକାରୁ ଦେଖିବାକୁ ପାଉଁ । ତାଙ୍କର ଉତ୍ତୁଙ୍ଗ ବ୍ୟକ୍ତିତ୍ୱ, ଗରିବ ଜନତାର ଉତ୍‌ଥାନ ପାଇଁ ବଳିଷ୍ଠ ପ୍ରୟାସ ଓ ଓଡ଼ିଶାର ସର୍ବବିଧ ଉନ୍ନତି ପାଇଁ ବିଭିନ୍ନ ପଦକ୍ଷେପ କେବଳ ତାଙ୍କୁ ଜଣେ ଜନନେତା ଭାବେ ପରିଚିତ କରିନାହିଁ ବରଂ ଜଣେ ପ୍ରବାଦପୁରୁଷ ଭାବରେ ପ୍ରତ୍ୟେକ ଓଡ଼ିଆ ହୃଦୟରେ ସ୍ଥାନ ଦେଇଛି ।



ବିଜୁବାବୁ ଦୁଇଥର ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଥିଲେ । ତାଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ ଦୈତାରୀ-ପାରାଦୀପ ଏକ୍ସପ୍ରେସ ରାସ୍ତା ନିର୍ମାଣ ଓ ପାରାଦୀପ ବନ୍ଦର ପ୍ରତିଷ୍ଠା, ଓଡ଼ିଶାର ପ୍ରଗତିରେ ମାଇଲଖୁଣ୍ଟ ସଦୃଶ । ଏତଦବ୍ୟତୀତ ଓଟିଏମ, କଳିଙ୍ଗ ଟିଉବସ, କଳିଙ୍ଗ ଆଇରନ ୱାର୍କସ ଓ କଳିଙ୍ଗ ଏୟାର ୱେଜ ପ୍ରଭୃତି ପ୍ରତିଷ୍ଠା କରି ଓଡ଼ିଶାର ଶିଳ୍ପାୟନ ପାଇଁ ସେ ଏକ ଯୁଗାନ୍ତକାରୀ ପଦକ୍ଷେପ ନେଇଥିଲେ । ସୁନାବେଡ଼ାରେ ମିଗ୍ କାରଖାନା ପ୍ରତିଷ୍ଠା ହେବାରେ ତାଙ୍କର ଉଦ୍ୟମ ପ୍ରଶଂସନୀୟ । ଓଡ଼ିଶାରେ ରିଜିଓନାଲ କଲେଜ ଅଫ୍ ଏଜୁକେଶନ, କୃଷି ଓ ବୈଷୟିକ

ବିଶ୍ୱବିଦ୍ୟାଳୟ, ସୈନିକ ସ୍କୁଲ, ବୁର୍ଲା ଇଞ୍ଜିନିୟରିଂ କଲେଜ, ସଂଗୀତ ମହାବିଦ୍ୟାଳୟ, ବୁର୍ଲା ମେଡ଼ିକାଲ କଲେଜ, ରିଜିଓନାଲ ରିସର୍ଚ୍ଚ ଲାବୋରେଟୋରି, ହୀରାକୁଦ ନଦୀବନ୍ଧ ଯୋଜନା, ତାଳଚେ଼ର ଥର୍ମାଲ, ବାଲିମେଳା ବନ୍ଧ ଯୋଜନା, ଯାଜପୁର ରୋଡ଼ ଫେରୋକ୍ରମ ଏବଂ ବ୍ରହ୍ମପୁର ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପ୍ରଭୃତି ବିଜୁବାବୁଙ୍କର ଅମର କୃତି । ଓଡ଼ିଶାରେ ଫୁଟବଲ ଖେଳର ଉନ୍ନତି ପାଇଁ ସେ 'କଳିଙ୍ଗ କପ୍' ପ୍ରତିଷ୍ଠା କରିଥିଲେ । ଭୁବନେଶ୍ୱରରେ ପ୍ରତିଷ୍ଠିତ 'କଳିଙ୍ଗ ଷ୍ଟାଡ଼ିୟମର' ସେ ଭିତ୍ତିପ୍ରସ୍ତର ସ୍ଥାପନ କରିଥିଲେ । ଓଡ଼ିଶାରେ 'କଳିଙ୍ଗ' ଖବର କାଗଜର ସେ ପ୍ରାଣପ୍ରତିଷ୍ଠାତା ଥିଲେ । ଅନ୍ତର୍ଜାତୀୟ ସ୍ତରରେ ବିଜ୍ଞାନକୁ ଜନପ୍ରିୟ କରିବା ପାଇଁ ସେ ୧୯୫୧ ମସିହାରେ 'କଳିଙ୍ଗ ପୁରସ୍କାର' ପ୍ରଚଳନ କରିଥିଲେ । ୟୁନେସ୍କୋ ଜରିଆରେ ପ୍ରତିବର୍ଷ ଏହି ପୁରସ୍କାର ଦିଆଯାଉଅଛି । ଓଡ଼ିଶାରେ ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥାକୁ ୧୯୬୧ ମସିହାରେ ବିଜୁବାବୁ କାର୍ଯ୍ୟକାରୀ କରାଇଥିଲେ । ଦ୍ୱିତୀୟ ଥର ମୁଖ୍ୟମନ୍ତ୍ରୀ ହେଲାପରେ ନିୟମ ପ୍ରଣୟନ କରି ତ୍ରିସ୍ତରୀୟ ପଞ୍ଚାୟତ ବ୍ୟବସ୍ଥାରେ ନିର୍ବାଚନ ଓ ମହିଳାମାନଙ୍କ ପାଇଁ ସ୍ଥାନ ସଂରକ୍ଷଣ କରାଇଥିଲେ । ଓଡ଼ିଶାରେ ଜିଲ୍ଲା ସଂଖ୍ୟାକୁ ୩୦କୁ ବୃଦ୍ଧି କରିଥିଲେ । ଓଡ଼ିଶା ଇତିହାସରେ ବିଜୁବାବୁଙ୍କର ଏହା ଅକ୍ଷୟ କୀର୍ତ୍ତି ।

ବିଜୁବାବୁଙ୍କ ଦ୍ୱିତୀୟ ଥର ମୁଖ୍ୟମନ୍ତ୍ରିତ୍ୱ କାଳ (୧୯୯୦-୯୫) ଓଡ଼ିଶାର ସ୍କୁଲ ଓ ଗଣଶିକ୍ଷା ପାଇଁ ଥିଲା ସୁବର୍ଣ୍ଣଯୁଗ । ଏହି ସମୟରେ ଶିକ୍ଷାର ବିକାଶ କ୍ଷିପ୍ର ଗତିରେ ହୋଇଥିଲା । ମୁଖ୍ୟମନ୍ତ୍ରୀଭାବେ ବିଜୁବାବୁ ସ୍କୁଲ ଓ ଗଣଶିକ୍ଷାର ପ୍ରଶାସନିକ ଉନ୍ନତି ପାଇଁ ବ୍ୟାପକ କାର୍ଯ୍ୟକ୍ରମମାନ ହାତକୁ ନେଇଥିଲେ । ପ୍ରାଥମିକ ଓ ମାଧ୍ୟମିକ ଶିକ୍ଷାକୁ ଗତିଶୀଳ କରିବା ପାଇଁ ୧୯୯୩ ମସିହା ଜାନୁଆରୀ ମାସରେ ନୂତନ ଭାବେ 'ସ୍କୁଲ ଓ ଗଣଶିକ୍ଷା ବିଭାଗ' ଖୋଲିଥିଲେ । ଆଗରୁ ଉଚ୍ଚଶିକ୍ଷାସହ ମିଶି ସ୍କୁଲ ଶିକ୍ଷା ଥିଲା ଜଣେ ଶିକ୍ଷା ମନ୍ତ୍ରୀଙ୍କ ଅଧୀନରେ । ବିଜୁବାବୁ ପ୍ରଥମଥର ପାଇଁ ସ୍କୁଲ ଓ ଗଣଶିକ୍ଷା ମନ୍ତ୍ରୀ ନିଯୁକ୍ତ କଲେ । ଏହା ତାଙ୍କର ଏକ ସାହସିକ ପଦକ୍ଷେପ ଥିଲା । ଓଡ଼ିଶାରେ ୧୫ଟି ଶିକ୍ଷା ସର୍କଲ କାର୍ଯ୍ୟ କରୁଥିଲା । ସ୍କୁଲସଂଖ୍ୟା ଅନୁପାତରେ ସର୍କଲ ସଂଖ୍ୟା କମ୍ ଥିବାରୁ ବିଦ୍ୟାଳୟ ପରିଦର୍ଶନ ଓ ଶିକ୍ଷକମାନଙ୍କର ଚାକିରି ସମ୍ବନ୍ଧୀୟ କାର୍ଯ୍ୟଗୁଡ଼ିକ ଯଥା ସମୟରେ ହୋଇ ପାରୁନଥିଲା । ବିଜୁବାବୁ ୧୯୯୦ ମସିହାରେ ମୁଖ୍ୟମନ୍ତ୍ରୀ ହେବାପରେ ସେହି ବର୍ଷ ଜୟପୁର, ଖୋରଧା ଓ ଭଦ୍ରକଠାରେ ନୂତନ ଶିକ୍ଷା ସର୍କଲ ସ୍ଥାପନ କଲେ । ୧୯୯୩ ମସିହାରେ କେନ୍ଦ୍ରାପଡ଼ା ପାଇଁ ଏକ ନୂତନ ଶିକ୍ଷା ସର୍କଲ ସୃଷ୍ଟି କଲେ । ୧୫ଟି ଶିକ୍ଷାସର୍କଲକୁ ବୃଦ୍ଧି କରି ୧୯ଟି ଶିକ୍ଷା ସର୍କଲରେ ପରିଣତ କଲେ । ଫଳରେ ଶିକ୍ଷା ପ୍ରଶାସନ ଓ ପରିଦର୍ଶନ କାର୍ଯ୍ୟ ସୁଗମ ହୋଇଥିଲା । ଏହା ବିଜୁବାବୁଙ୍କର ଏକ ଯୁଗାନ୍ତକାରୀ ପଦକ୍ଷେପ ଥିଲା । କେନ୍ଦ୍ରାପଡ଼ା ନୂତନ ସର୍କଲ ସୃଷ୍ଟି ହେବା ଫଳରେ କଟକରେ କାର୍ଯ୍ୟ କରୁଥିବା କଟକ-୩ୟ ଶିକ୍ଷାସର୍କଲ ଜଗତସିଂହପୁର ସର୍କଲଭାବେ ଜଗତସିଂହପୁରଠାରେ କାର୍ଯ୍ୟ କଲା । ଶିକ୍ଷକମାନଙ୍କୁ କଟକ ଧାଇଁବାରୁ ରକ୍ଷା ମିଳିଲା । ସ୍କୁଲଶିକ୍ଷାର ଉନ୍ନତି ପାଇଁ ବିଜୁବାବୁ ଶିକ୍ଷା ବଜେଟରେ ଅଧିକ ଅର୍ଥର ବ୍ୟବସ୍ଥା କରିଥିଲେ । ପ୍ରାଥମିକ ବିଦ୍ୟାଳୟଗୁଡ଼ିକରେ ପାଠପଢା କାର୍ଯ୍ୟକୁ ପରିଦର୍ଶନ କରିବା ପାଇଁ ୧୯୯୦-୯୧ ମସିହାରେ ୩୭୭ଟି ନୂତନ ସ୍କୁଲ ସବ୍-ଇନ୍‌ସପେକ୍ଟର ପଦବୀ ସୃଷ୍ଟି କରିଥିଲେ । ବିଜୁବାବୁଙ୍କ ସମୟରେ ମାଧ୍ୟମିକ ଶିକ୍ଷା ପରିଷଦ (ବୋର୍ଡ଼)ର ଦୁଇଟି ଜୋନାଲ୍ ଅଫିସ ବାରିପଦା ଓ ଭୁବନେଶ୍ୱରଠାରେ ଖୋଲା ଯାଇଥିଲା । ଫଳରେ ଛାତ୍ରଛାତ୍ରୀ ଓ ସ୍କୁଲଗୁଡ଼ିକର କାର୍ଯ୍ୟ ସହଜରେ ହେବାର ବ୍ୟବସ୍ଥା ହେଲା । ସେହି ଜୋନ୍‌ର ପିଲା ଓ ଶିକ୍ଷକମାନେ କଟକ ଅଫିସକୁ ଯିବା ଆସିବା କରିବାରେ ଯେଉଁ ଖର୍ଚ୍ଚାନ୍ତ ହେଉଥିଲେ, ସେଥିରୁ ରକ୍ଷା ପାଇଲେ । ମୁଖ୍ୟମନ୍ତ୍ରୀଭାବରେ ବିଜୁବାବୁଙ୍କର ସ୍କୁଲ ଓ ଗଣଶିକ୍ଷା କ୍ଷେତ୍ରରେ ଯୁଗାନ୍ତକାରୀ ପଦକ୍ଷେପ, ଓଡ଼ିଶାର ଶିକ୍ଷା ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ।

ଶିକ୍ଷକ, ଶିକ୍ଷାକର୍ମୀ, ବିଦ୍ୟାଳୟ ପରିଚାଳନା କମିଟି ଓ ଛାତ୍ରଛାତ୍ରୀମାନଙ୍କର ସୁବିଧା ପାଇଁ ସେ ଅନେକଗୁଡ଼ିଏ ଶିକ୍ଷା ଆଇନ୍ ପ୍ରଣୟନ କରିଥିଲେ ଓ ପୁରୁଣା ଆଇନ୍‌ରେ ଥିବା ଦୋଷ ଦୁର୍ବଳତାଗୁଡ଼ିକର ସଂଶୋଧନ କରିଥିଲେ । ୧୯୯୦ ମସିହାରେ ପ୍ରାଥମିକ ସ୍କୁଲ ଶିକ୍ଷକମାନଙ୍କ ପାଇଁ ଯେଉଁମାନେ ବିଭିନ୍ନ କାରଣରୁ ପେନ୍‌ସନ ପାଇବାରୁ ବଞ୍ଚିତ ହେଉଥିଲେ ସେଥିପାଇଁ ସର୍ବନିମ୍ନ ପେନ୍‌ସନର ବ୍ୟବସ୍ଥା କରିଥିଲେ । ରାଜ୍ୟରେ

ଆବଶ୍ୟକତା ଦୃଷ୍ଟିରୁ ଅଧିକ ଉଚ୍ଚ ବିଦ୍ୟାଳୟ ଓ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ଖୋଲିବା ପାଇଁ ସ୍ୱୀକୃତି ନିୟମରେ ସଂଶୋଧନ ବିଜୁବାବୁଙ୍କ ସମୟରେ ୧୯୯୧ ମସିହାରେ ହୋଇଥିଲା । ଏତଦ୍‌ବ୍ୟତୀତ ବେସରକାରୀ ବିଦ୍ୟାଳୟଗୁଡ଼ିକର ସ୍ଥାପନ, ସ୍ୱୀକୃତି ଓ ପରିଚାଳନା ବ୍ୟବସ୍ଥାରେ ସରଳୀକରଣ ପାଇଁ ନିୟମ ପ୍ରଣୟନ କରିଥିଲେ । ଇଂରାଜୀ ମିଡ଼ିୟମ ସ୍କୁଲଗୁଡ଼ିକର ପରିଚାଳନାରେ ଶୃଙ୍ଖଳା ଆଣିବା ପାଇଁ ଏକ କମିଟି ଗଠନର ନିଷ୍ପତ୍ତି ତାଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ ହୋଇଥିଲା । ସରକାରୀ ଶିକ୍ଷକ ନିଯୁକ୍ତି ନିୟମ ସଂଶୋଧନ ସହ ବେସରକାରୀ ବିଦ୍ୟାଳୟଗୁଡ଼ିକରେ ନୂତନ ଶିକ୍ଷକ ପ୍ରବରଣମଣ୍ଡଳୀ ମାଧ୍ୟମରେ ଜିଲ୍ଲା ସ୍ତରରେ ନିଯୁକ୍ତ କରିବା ପାଇଁ ନିୟମ ପ୍ରଣୟନ କରାଯାଇଥିଲା । ଅନୁଦାନପ୍ରାପ୍ତ ହାଇସ୍କୁଲ ଶିକ୍ଷକମାନଙ୍କ ପାଇଁ ଶିକ୍ଷାସର୍କଲ ସ୍ତରରେ କମନ୍ କ୍ୟାଡ଼ର ପ୍ରଣୟନ ସହ ପ୍ରମୋଶନ ପାଇଁ ପଦକ୍ଷେପ ନିଆଯାଇଥିଲା । ପ୍ରାଥମିକ ବିଦ୍ୟାଳୟଗୁଡ଼ିକ ପାଇଁ ଗ୍ରାମ୍ୟ ଶିକ୍ଷା କମିଟି (VEC) ଗଠନ ଏକ ବଳିଷ୍ଠ ନିଷ୍ପତ୍ତି ଥିଲା । ବହୁ ବର୍ଷ ହେଲା ଅନୁଦାନ ପାଇନଥିବା ବେସରକାରୀ ହାଇସ୍କୁଲ ଓ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ପାଇଁ ୧୯୯୪ ମସିହାରେ, ଅନୁଦାନ ପ୍ରଦାନ ନିମନ୍ତେ ଆଇନ ପ୍ରଣୟନ କରିଥିଲେ ।

ବିଜୁବାବୁଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ ୧୯୯୧-୯୨ ମସିହାରେ ଉଚ୍ଚ ପ୍ରାଥମିକ (ମି.ଇ) ଓ ୧୯୯୪ ମସିହାରେ ମାଧ୍ୟମିକ ବିଦ୍ୟାଳୟଗୁଡ଼ିକର ସରକାରୀକରଣ ଏକ ଯୁଗାନ୍ତକାରୀ ପଦକ୍ଷେପ ଥିଲା । ଅନୁଦାନପ୍ରାପ୍ତ ସ୍କୁଲଗୁଡ଼ିକୁ ସରକାର ହାତକୁ ନେବା ଫଳରେ ଶହ ଶହ ବେସରକାରୀ ଶିକ୍ଷକ ସରକାରୀ ଶିକ୍ଷକ ଭାବେ ପରିଗଣିତ ହେଲେ ଓ ବହୁବିଧ ସରକାରୀ ସୁବିଧା ସୁଯୋଗ ଲାଭ କଲେ । ଶିକ୍ଷାନୁଷ୍ଠାନଗୁଡ଼ିକ ସରକାରୀ ହେବା ଫଳରେ ବିକାଶ କାର୍ଯ୍ୟ ମଧ୍ୟ ତ୍ୱରାନ୍ୱିତ ହେଲା । ୪,୯୧୦ଟି ଅନୁଦାନପ୍ରାପ୍ତ ଉଚ୍ଚ ପ୍ରାଥମିକ ବିଦ୍ୟାଳୟର ପରିଚାଳନା ଭାର ସରକାର ହାତକୁ ନେଇଥିଲେ । ଏତଦ୍‌ବ୍ୟତୀତ ୩୦୧୨ଟି ପୂର୍ଣ୍ଣ ଅନୁଦାନ ପ୍ରାପ୍ତ ହାଇସ୍କୁଲକୁ ସରକାରୀକରଣ ପାଇଁ ନିଷ୍ପତ୍ତି ନିଆଯାଇଥିଲା ଓ ତନ୍ମଧ୍ୟରୁ ୨୯୨୯ଟି ହାଇସ୍କୁଲକୁ ସରକାର ପ୍ରଥମ ପର୍ଯ୍ୟାୟରେ ହାତକୁ ନେଇଥିଲେ । ସରକାର ୭ଟି ବେସରକାରୀ ବି.ଇଡ଼ି ଟ୍ରେନିଂ କଲେଜକୁ ପ୍ରଥମଥର ପାଇଁ ହାତକୁ ନେଇ ସରକାରୀ ଅନୁଷ୍ଠାନରେ ପରିଣତ କଲେ । ଫଳରେ ସେସବୁ ଅନୁଷ୍ଠାନରେ କାର୍ଯ୍ୟ କରୁଥିବା ଅଧ୍ୟାପକମାନେ ସରକାରୀ ସୁବିଧା ସୁଯୋଗ ଲାଭ କଲେ । ୮ଟି ସେକେଣ୍ଡାରୀ ଟ୍ରେନିଂ ସ୍କୁଲକୁ ଜିଲା ଶିକ୍ଷା ଓ ତାଲିମ ଅନୁଷ୍ଠାନକୁ ଉନ୍ନୀତ କରାଯାଇଥିଲା । ବିଜୁବାବୁଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ ରାଧାନାଥ ଟ୍ରେନିଂ କଲେଜକୁ IASEରେ ପରିଣତ କରାଯିବା ସହ ୩ ଗୋଟି ଟ୍ରେନିଂ କଲେଜକୁ CTEର ମାନ୍ୟତା ଦିଆଯାଇଥିଲା । ଏସବୁ ଅନୁଷ୍ଠାନଗୁଡ଼ିକ ସ୍କୁଲ ଓ ଗଣଶିକ୍ଷା ବିଭାଗ ଅଧୀନରେ ପରିଚାଳିତ ହେଉଛି । ଏହି ସମୟ ଭିତରେ ବହୁ ବେସରକାରୀ ଉଚ୍ଚପ୍ରାଥମିକ (ମି.ଇ) ଓ ହାଇସ୍କୁଲଗୁଡ଼ିକୁ ଅନୁଦାନ ପ୍ରଦାନ କରାଯାଇ ରାଜ୍ୟରେ ବିଦ୍ୟାଳୟ ଶିକ୍ଷାର ସଂପ୍ରସାରଣ କରାଯାଇଥିଲା । ଭୁବନେଶ୍ୱରଠାରେ ଅବସ୍ଥିତ ମୂକ ଓ ବଧିର ବିଦ୍ୟାଳୟରେ ସ୍ଥାନ ସଂଖ୍ୟା ବୃଦ୍ଧି କରାଯାଇ ଅଧିକ ସଂଖ୍ୟାରେ ଛାତ୍ରଛାତ୍ରୀଙ୍କୁ ପାଠ ପଢିବାର ସୁଯୋଗ ପ୍ରଦାନ କରାଯାଇଥିଲା । ନୂତନ ପ୍ରାଥମିକ ଓ ଉନ୍ନୀତ ମଧ୍ୟ ଇଂରାଜୀ ବିଦ୍ୟାଳୟ ଖୋଲାଯାଇ ପିଲାମାନଙ୍କର ପାଠପଢା ନିମନ୍ତେ ବ୍ୟବସ୍ଥା କରାଯାଇଥିଲା । ନୂତନଭାବେ ୭ଟି ଉଚ୍ଚ ଇଂରାଜୀ ବିଦ୍ୟାଳୟ ଖୋଲାଯିବା ସହ ୧୫୦ଟି ଉଚ୍ଚ ପ୍ରାଥମିକ ବିଦ୍ୟାଳୟକୁ ହାଇସ୍କୁଲକୁ ଉନ୍ନୀତ କରାଯାଇଥିଲା । ଏହି ସମୟରେ ଶିକ୍ଷାକର୍ମୀମାନଙ୍କୁ ନିୟମିତ ଶିକ୍ଷକଭାବେ ଅବସ୍ଥାପିତ କରାଯିବା ଫଳରେ ବିଦ୍ୟାଳୟଗୁଡ଼ିକରେ ଶିକ୍ଷକ ଅଭାବଜନିତ ସମସ୍ୟାର ସମାଧାନ ହୋଇଥିଲା । ରାଜ୍ୟରେ ବହୁ ହାଇସ୍କୁଲରେ ଦୁଇ ସ୍ତରରେ ଖୋଲା ଯାଇଥିବା ଧନ୍ଦାମୂଳକ ଶିକ୍ଷାଦାନ କାର୍ଯ୍ୟକୁ ତ୍ୱରାନ୍ୱିତ କରାଯାଇଥିଲା । ଏତଦ୍ ବ୍ୟତୀତ ନୂତନ ଶିକ୍ଷକ ପଦବୀ ସୃଷ୍ଟି, ଶିକ୍ଷକମାନଙ୍କର ପଦୋନ୍ନତି, ବାର୍ଷିକ ବଦଳି, ମଦ୍ରାସା ଓ ସଂସ୍କୃତ ଟୋଲଗୁଡ଼ିକର ସ୍ୱୀକୃତି ଓ ଉନ୍ନତି ପ୍ରଭୃତି ବହୁବିଧ ବିକାଶମୂଳକ କାର୍ଯ୍ୟ ହୋଇଥିଲା । ଅବସର ଗ୍ରହଣ କରୁଥିବା ଶିକ୍ଷକମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ପେନ୍‌ସନ୍ ସେଲ୍ ଗଠନ ଶିକ୍ଷକମାନଙ୍କୁ ପେନ୍‌ସନ୍ ପାଇବାରେ ବହୁ ସାହାଯ୍ୟ କରୁଥିଲା ।

ବିଜୁ ପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ ବେସରକାରୀ ଟ୍ରେନିଂ କଲେଜ ଓ ସ୍କୁଲ ଖୋଲିବା ନିଷିଦ୍ଧ କରାଯାଇଥିଲା । ଏହା ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ ।

କୌଣସି ଭିତ୍ତିଭୂମି ନଥାଇ ନିମ୍ନମାନର ଟ୍ରେନିଂ ପ୍ରଦାନ ଶିକ୍ଷା ବ୍ୟବସ୍ଥାରେ ପ୍ରତିକୂଳ ପ୍ରଭାବ ପକାଉଥିଲା । ସରକାରଙ୍କ ଦୃଢ ପଦକ୍ଷେପ ଫଳରେ ଏସବୁକୁ ରୋକାଯାଇ ପାରିଲା । କଳାପଟା ଅଭିଯାନ ଓ ସମସ୍ତଙ୍କ ପାଇଁ ଶିକ୍ଷା କାର୍ଯ୍ୟକ୍ରମକୁ ସଫଳତାର ସହିତ କାର୍ଯ୍ୟକାରୀ କରାଯାଇଥିଲା । ବିଦ୍ୟାଳୟମାନଙ୍କରେ ଗୁଣାତ୍ମକ ଶିକ୍ଷା ପ୍ରଦାନ କରାଯିବା ପାଇଁ ରଙ୍ଗୀନ ଟେଲିଭିଜନ୍ ଓ ରେଡ଼ିଓ–ତଥା–କ୍ୟାସେଟ ଯୋଗାଇ ଦିଆଯିବାର ବ୍ୟବସ୍ଥା ହୋଇଥିଲା । ଫଳରେ ଛାତ୍ରଛାତ୍ରୀମାନେ ଶିକ୍ଷା କାର୍ଯ୍ୟକ୍ରମଗୁଡ଼ିକୁ ଦେଖିବା ଓ ଶୁଣିବାର ସୁଯୋଗ ଲାଭ କରୁଥିଲେ । ପିଲାମାନଙ୍କର ସୁବିଧା ଲାଗି ବିଦ୍ୟାଳୟମାନଙ୍କରେ ନାମଲେଖାର ଶେଷ ତାରିଖ ନଭେମ୍ବର ୧୪ (ଶିଶୁ ଦିବସ) ପର୍ଯ୍ୟନ୍ତ ବଢାଇ ଦିଆଯାଇଥିଲା । ବିଜୁବାବୁଙ୍କ ନିର୍ଦ୍ଦେଶରେ ସ୍କୁଲରେ ପିଲା ନାମ ଲେଖାଇଲାବେଳେ ମାଆ ଓ ବାପା ଉଭୟଙ୍କ ନାମ ନାମଲେଖା ଖାତାରେ ରହିବା ପାଇଁ ନିଷ୍ପତ୍ତି ହୋଇଥିଲା । ଯାହାଫଳରେ ପିଲା ସାର୍ଟିଫିକେଟ ନେଲାବେଳେ ସେଥିରେ ମାଆ ଓ ବାପାଙ୍କ ନାମ ଲିପିବଦ୍ଧ ହେଉଛି । ଭୁବନେଶ୍ୱର ୪ ନମ୍ବର ୟୁନିଟରେ ଯେଉଁ ଶିକ୍ଷକ ସଦନ ନିର୍ମାଣାଧୀନ ଅଛି, ତାହା ବିଜୁବାବୁଙ୍କର ନିଷ୍ପତ୍ତି ଯୋଗୁଁ ସମ୍ଭବ ହୋଇଛି । ବିଜୁବାବୁଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ 'ସମସ୍ତଙ୍କ ପାଇଁ ଶିକ୍ଷା' କାର୍ଯ୍ୟକ୍ରମକୁ ବ୍ୟାପକ ଭାବେ କାର୍ଯ୍ୟକାରୀ କରିବା ପାଇଁ ଏକ ସ୍ୱତନ୍ତ୍ର ପ୍ରକୋଷ୍ଠ ଖୋଲାଯିବାର ବ୍ୟବସ୍ଥା ହୋଇଥିଲା । ସ୍କୁଲ ସବ୍–ଇନ୍‌ସପେକ୍ଟରମାନଙ୍କୁ ବ୍ଲକରେ କରୁଥିବା ଅଣଶିକ୍ଷା କାର୍ଯ୍ୟରୁ ନିବୃତ୍ତ କରି କେବଳ ଶିକ୍ଷା କାର୍ଯ୍ୟରେ ନିୟୋଜିତ କରିବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ଇଂରାଜୀ ମାଧ୍ୟମ ସ୍କୁଲରେ ଓଡ଼ିଆ ବିଷୟ ପଢାଯିବା ସହ ପରୀକ୍ଷା କରାଯିବା ବାଧ୍ୟତାମୂଳକ କରିଥିଲେ । ହାଇସ୍କୁଲ ପରୀକ୍ଷାରେ ପ୍ରଥମ ୧୦ଟି ସ୍ଥାନ ଅଧିକାର କରି ମେଧା ତାଲିକାରେ ରହୁଥିବା ଛାତ୍ରଛାତ୍ରୀମାନଙ୍କୁ 'ମୁଖ୍ୟମନ୍ତ୍ରୀ ମେଧା ପୁରସ୍କାର' ଓ ପ୍ରମାଣପତ୍ର ପ୍ରଦାନ କରାଯାଇ ପ୍ରୋତ୍ସାହିତ କରାଯାଉଥିଲା । ପ୍ରଥମ ସ୍ଥାନ ଅଧିକାର କରୁଥିବା ପିଲାକୁ ସ୍ୱର୍ଣ୍ଣପଦକ ପ୍ରଦାନ କରାଯାଉଥିଲା । ଓଡ଼ିଶାରେ ସାକ୍ଷରତା ହାର ବୃଦ୍ଧି କରିବା ପାଇଁ ସମ୍ପୂର୍ଣ୍ଣ ସାକ୍ଷରତା କାର୍ଯ୍ୟକ୍ରମ ସହ ବହୁ ଜନସଚେତନତା କାର୍ଯ୍ୟକ୍ରମ ସରକାର ହାତକୁ ନେଇ କାର୍ଯ୍ୟକାରୀ କରିଥିଲେ । ପିଲାମାନଙ୍କର ପଠନ ଆଗ୍ରହ ଓ ଶିଶୁ ସାହିତ୍ୟ ପ୍ରତି ସଚେତନା ସୃଷ୍ଟି କରିବା ନିମନ୍ତେ 'ଶିଶୁଲେଖା'ର ପୁନଃ ପ୍ରକାଶନର ବ୍ୟବସ୍ଥା କରାଯାଇଥିଲା । ଫଳରେ ଶିଶୁଲେଖା ନିୟମିତ ଭାବେ ପ୍ରକାଶ ପାଇଥିଲା ଓ ଛାତ୍ରଛାତ୍ରୀମାନେ ପଢି ଉପକୃତ ହେଉଥିଲେ । ୧୯୯୩–୯୪ ମସିହାରେ DPEP କାର୍ଯ୍ୟକୁ ତ୍ୱରାନ୍ୱିତ କରାଯାଇଥିଲା । ପାଠ୍ୟପୁସ୍ତକ ଯୋଗାଣ ଓ ବଣ୍ଟନକୁ ଶୃଙ୍ଖଳିତ କରାଯାଇଥିଲା । ବିକ୍ରୟ କେନ୍ଦ୍ରର ସଂଖ୍ୟା ବୃଦ୍ଧି କରାଯାଇ ପାଠ୍ୟପୁସ୍ତକକୁ ଓଡ଼ିଶାର ବିଭିନ୍ନ ଅଞ୍ଚଳର ଛାତ୍ରଛାତ୍ରୀଙ୍କ ନିକଟରେ ସହଜଲଭ୍ୟ କରାଯାଇ ପାରିଥିଲା । ଛାତ୍ରବୃତ୍ତିର ପରିମାଣକୁ ବୃଦ୍ଧି କରାଯାଇଥିଲା । ବିଜୁବାବୁ କଳିଙ୍ଗ ଫାଉଣ୍ଡେସନ ଟ୍ରଷ୍ଟରୁ ଛାତ୍ରଛାତ୍ରୀଙ୍କୁ ଶିକ୍ଷା ପାଇଁ ଅର୍ଥ ସାହାଯ୍ୟ କରୁଥିଲେ ଓ ଏହି ଟ୍ରଷ୍ଟର ପ୍ରତିଷ୍ଠାତା ଥିଲେ । ବିଜୁ ବାବୁଙ୍କ ଦ୍ୱିତୀୟଥର ମୁଖ୍ୟମନ୍ତ୍ରିତ୍ୱ କାଳରେ ସ୍କୁଲ ଓ ଗଣଶିକ୍ଷା ବ୍ୟବସ୍ଥାର ଉନ୍ନତି ସହ ଶିକ୍ଷକ ସମାଜର କଲ୍ୟାଣ ପାଇଁ ସରକାର ବହୁବିଧ କାର୍ଯ୍ୟକ୍ରମ ହାତକୁ ନେଇଥିଲେ । ଫଳରେ ଶିକ୍ଷାକ୍ଷେତ୍ରରେ ବ୍ୟାପକ ପରିବର୍ତ୍ତନ ପରିଲକ୍ଷିତ ହୋଇଥିଲା ।

ବାସ୍ତବିକ ଶିକ୍ଷାକ୍ଷେତ୍ରରେ ସଫଳତାର ଏହି ୫ ବର୍ଷ ଓଡ଼ିଶାର ସ୍କୁଲ ଓ ଗଣଶିକ୍ଷାର 'ସୁବର୍ଣ୍ଣ ଯୁଗ' ଭାବେ ଅଭିହିତ । ଏହା ଶିକ୍ଷା ଇତିହାସରେ ଲିପିବଦ୍ଧ ହୋଇ ରହିବ, ଏଥିରେ ଦ୍ୱିମତ ନାହିଁ । ଶିକ୍ଷାର ଉନ୍ନତି କଳ୍ପେ, ବିଜୁବାବୁଙ୍କ ଅବଦାନ ଚିର ସ୍ମରଣୀୟ । ବାସ୍ତବରେ ସେ ଥିଲେ ଜଣେ ଚିନ୍ତାନାୟକ, ପ୍ରବାଦପୁରୁଷ ଓ ଓଡ଼ିଆ ସ୍ୱାଭିମାନର ପ୍ରତୀକ, ପ୍ରତ୍ୟେକ ଓଡ଼ିଆର ଘରେ ଘରେ ପରିଚିତ ଏବଂ ତ୍ୟାଗ ଓ ସାହସର ଏକ ମୂର୍ତ୍ତିମନ୍ତ ପ୍ରତୀକ । ସେହି ମହାନ୍ ବ୍ୟକ୍ତିତ୍ୱ ଲୋକପ୍ରିୟତାର ଚରମ ସୀମାରେ ପହଞ୍ଚି ଥିଲେ । କୋଟି ଓଡ଼ିଆଙ୍କ ହୃଦୟରେ ସେ ଅମର ଓ ଚିରଭାସ୍ୱର । ତାଙ୍କୁ ଓଡ଼ିଆ ଜାତି କେବେବି ଭୁଲି ପାରିବ ନାହିଁ ।

୭/ଏମ୍–୫୧, ଶୈଳଶ୍ରୀ ବିହାର
ଭୁବନେଶ୍ୱର–୨୧

# ଗ୍ରାମାଞ୍ଚଳ ବିକାଶରେ ଗ୍ରାମବାସୀଙ୍କର ଭୂମିକା

**ସନ୍ତୋଷ କୁମାର ପାତ୍ର**

ଆପଣମାନେ ଜାଣନ୍ତି, ଗ୍ରାମାଞ୍ଚଳରେ ସ୍ୱୟଂଶାସନ ପ୍ରତିଷ୍ଠା କରି ଗାଁଗୁଡ଼ିକୁ ଆତ୍ମନିର୍ଭରଶୀଳ କରିବା ପାଇଁ ଜାତିର ପିତା ମହାତ୍ମା ଗାନ୍ଧୀ ସ୍ୱପ୍ନ ଦେଖିଥିଲେ ଗ୍ରାମ ସ୍ୱରାଜ। ତାକୁ ସାକାର କରିବା ପାଇଁ ଦେଶରେ କାର୍ଯ୍ୟକାରୀ ହେଲା 'ପଞ୍ଚାୟତିରାଜ ବ୍ୟବସ୍ଥା'। ୭୩ତମ ସମ୍ବିଧାନ ସଂଶୋଧନ କରାଯାଇ ପଞ୍ଚାୟତିରାଜ ବ୍ୟବସ୍ଥାକୁ ଅଧିକ ଶକ୍ତିଶାଳୀ କରାଗଲା। ତିନି ସ୍ତରର ପଞ୍ଚାୟତ, ଯଥା- ଗ୍ରାମ ସ୍ତରରେ - ଗ୍ରାମପଞ୍ଚାୟତ, ବ୍ଲକ ସ୍ତରରେ - ପଞ୍ଚାୟତ ସମିତି ଓ ଜିଲ୍ଲା ସ୍ତରରେ - ଜିଲ୍ଲା ପରିଷଦ କାର୍ଯ୍ୟକ୍ଷମ ହେଲା। ସ୍ଥାନୀୟ ଅଞ୍ଚଳର ବିକାଶମୂଳକ କାର୍ଯ୍ୟ ନିମନ୍ତେ ଯୋଜନା ପ୍ରସ୍ତୁତି କରିବା ପାଇଁ ଗ୍ରାମପଞ୍ଚାୟତକୁ ଦାୟିତ୍ୱ ଦିଆଗଲା। ଗ୍ରାମାଞ୍ଚଳରେ ସାମାଜିକ ନ୍ୟାୟ ପ୍ରତିଷ୍ଠା ସହିତ ଅର୍ଥନୈତିକ ବିକାଶ ନିମନ୍ତେ ବିଭିନ୍ନ ଯୋଜନା, କାର୍ଯ୍ୟକ୍ରମ ଓ ପ୍ରକଳ୍ପଗୁଡ଼ିକ କାର୍ଯ୍ୟକାରୀ ହେବା ପୂର୍ବରୁ ଗ୍ରାମସଭା ଦ୍ୱାରା ଅନୁମୋଦନର ବ୍ୟବସ୍ଥା ରଖାଯାଇଛି। ଆମ ରାଜ୍ୟରେ ଗ୍ରାମ ସ୍ତରରେ ପଲ୍ଲୀସଭା ଓ ଗ୍ରାମପଞ୍ଚାୟତ ସ୍ତରରେ ଗ୍ରାମସଭା ଭଳି ବୈଧାନିକ ମାନ୍ୟତାପ୍ରାପ୍ତ ଅନୁଷ୍ଠାନ କାର୍ଯ୍ୟ କରିଆସୁଅଛି। ପଲ୍ଲୀସଭା ଜରିଆରେ ଗ୍ରାମବାସୀମାନେ ନିଜ ଗ୍ରାମ ପାଇଁ ଆବଶ୍ୟକ ଅଥବା ଉଚିତ ମନେ କରୁଥିବା ବିଭିନ୍ନ କାର୍ଯ୍ୟକ୍ରମ ଉପରେ ଗ୍ରାମସଭା ଓ ଗ୍ରାମପଞ୍ଚାୟତକୁ ସୁପାରିଶ କରିଥାନ୍ତି।

ଗ୍ରାମାଞ୍ଚଳର ବିକାଶ କହିଲେ ଗ୍ରାମରେ ବାସ କରୁଥିବା ଜନସାଧାରଣଙ୍କର ଜୀବନର ମାନ ବୃଦ୍ଧିକୁ ବୁଝାଏ। ଏକ ସମୃଦ୍ଧ ଗ୍ରାମୀଣ ଅର୍ଥନୀତି ଓ ସୁସ୍ଥ ଗ୍ରାମୀଣ ସମାଜ ଜରିଆରେ ଏହା ହାସଲ ହୋଇପାରିବ। ଏହାକୁ ଦୃଷ୍ଟିରେ ରଖି ଗ୍ରାମାଞ୍ଚଳର ବିକାଶ ନିମନ୍ତେ ଉଭୟ କେନ୍ଦ୍ର ଓ ରାଜ୍ୟ ସରକାର ଅନେକ ଯୋଜନା ଓ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରୁଛନ୍ତି। କର୍ମ ନିଯୁକ୍ତି ପାଇଁ 'ମହାତ୍ମା ଗାନ୍ଧୀ ନରେଗା', ସୁରକ୍ଷିତ ଜୀବିକା ନିମନ୍ତେ ଜାତୀୟ ଗ୍ରାମୀଣ ଜୀବିକା ମିଶନ, ଗୃହହୀନଙ୍କ ପାଇଁ ବାସଗୃହ, ମୌଳିକ ସେବା ନିମନ୍ତେ ଅର୍ଥ କମିଶନ ଅନୁଦାନ, ପିଇବା ପାଣି, ପରିମଳ, ଶିକ୍ଷା, ସ୍ୱାସ୍ଥ୍ୟ ଓ କୃଷିର ଉନ୍ନତି ନିମନ୍ତେ ଭିନ୍ନ ଭିନ୍ନ ଯୋଜନା ଗ୍ରାମାଞ୍ଚଳରେ କାର୍ଯ୍ୟକାରୀ ହେଉଅଛି। ଏଠାରେ ଉଲ୍ଲେଖଯୋଗ୍ୟ ଯେ ତିନୋଟି ପ୍ରମୁଖ ଅଂଶୀଦାରମାନଙ୍କ ଦ୍ୱାରା ଏହି ଯୋଜନାଗୁଡ଼ିକୁ ଲୋକମାନଙ୍କ ପାଖରେ ପହଞ୍ଚା ଯାଇଥାଏ। ସେମାନେ ହେଲେ- ଜନସାଧାରଣ, ଜନ ପ୍ରତିନିଧି ଓ ସ୍ଥାନୀୟ ପ୍ରଶାସନ। ସୁତରାଂ, ସମସ୍ତ ଯୋଜନାଗୁଡ଼ିକର ସଫଳ ରୂପାୟନ ସ୍ଥାନୀୟ ଲୋକମାନଙ୍କର ସଚେତନତା ଓ ଉତ୍ତମ ବୁଝାମଣା ଉପରେ ନିର୍ଭର କରେ। ଜନଜାଗରଣ ହେଲେ ହିଁ ଗ୍ରାମବାସୀମାନେ ଯୋଜନାଗୁଡ଼ିକର ରୂପାୟନରେ ସାମିଲ ହେବେ। ବିଭିନ୍ନ ଯୋଜନା ଓ କାର୍ଯ୍ୟକ୍ରମଗୁଡ଼ିକ ନିମନ୍ତେ ଯୋଜନା ପ୍ରସ୍ତୁତି, ଏହାର କାର୍ଯ୍ୟକାରିତା, ତଦାରଖ ଓ ମୂଲ୍ୟାୟନ ଭଳି ପ୍ରତ୍ୟେକ ସ୍ତରରେ ଗ୍ରାମବାସୀଙ୍କର ସକ୍ରିୟ ସହଭାଗିତା ରହିଲେ ବିକାଶମୂଳକ କାର୍ଯ୍ୟାବଳୀରେ ସ୍ୱଚ୍ଛତା ବୃଦ୍ଧି ପାଇବା ସଂଗେ ସଂଗେ କାର୍ଯ୍ୟକାରୀ ସଂସ୍ଥାଗୁଡ଼ିକର ଉତ୍ତରଦାୟିତ୍ୱ ବଢିବ। ଏଥିନିମନ୍ତେ ପଲ୍ଲୀସଭା, ଗ୍ରାମସଭା ଓ ବିଭିନ୍ନ ଗୋଷ୍ଠୀଭିତ୍ତିକ ଅନୁଷ୍ଠାନଗୁଡ଼ିକ ଗ୍ରାମ ସ୍ତରରେ କାର୍ଯ୍ୟ କରୁଛନ୍ତି। ଜନ ପ୍ରତିନିଧିଙ୍କ ସହିତ ସ୍ଥାନୀୟ ଜନସାଧାରଣଙ୍କର ସକ୍ରିୟ ଅଂଶଗ୍ରହଣ ପଲ୍ଲୀସଭା ଓ ଗ୍ରାମସଭାକୁ ଶକ୍ତିଶାଳୀ କରିବ। ଏହି ପରିପ୍ରେକ୍ଷୀରେ ଗ୍ରାମସଭାଗୁଡ଼ିକ ବାସ୍ତବରେ

ଗ୍ରାମପଞ୍ଚାୟତର ବାର୍ଷିକ ଯୋଜନା ଅନୁମୋଦନ ସହିତ ବିଭିନ୍ନ ପ୍ରକଳ୍ପ ବାବଦରେ ଅର୍ଥ ବିନିଯୋଗକୁ ସମୀକ୍ଷା କରିବା ଉଚିତ। ସମାଜର ସବୁବର୍ଗ ବିଶେଷ କରି ପଛୁଆ ଓ ଅବହେଳିତ ଗୋଷ୍ଠୀ ଯେପରି ଏହି ବିକାଶ ପ୍ରକ୍ରିୟାରେ ଅଂଶଗ୍ରହଣ କରିବେ ସେ ଦିଗରେ ସୁସ୍ଥ ବାତାବରଣ ସୃଷ୍ଟି ହେବା ବାଞ୍ଛନୀୟ। ଜନପ୍ରତିନିଧି ଓ ପ୍ରଶାସନର ଉତ୍ତମ ସମନ୍ୱୟରେ ଗାଁର ବିକାଶ ପାଇଁ ଜନସାଧାରଣଙ୍କ ଭାଗିଦାରିତା ବୃଦ୍ଧି କରାଯାଇପାରିବ।

ସ୍ଥାନୀୟ ଜନସାଧାରଣଙ୍କୁ ଅତ୍ୟାବଶ୍ୟକୀୟ ସେବା ଯୋଗାଇବା ସହିତ ଭିତ୍ତିଭୂମିରେ ଉନ୍ନତି ଆଣିବା ପାଇଁ ଅର୍ଥ କମିଶନଙ୍କ ସୁପାରିଶ ଆଧାରରେ ଗ୍ରାମପଞ୍ଚାୟତଗୁଡ଼ିକୁ ବିପୁଳ ଆର୍ଥିକ ଅନୁଦାନ ଦିଆଯାଉଛି। ଏହି ଅନୁଦାନଗୁଡ଼ିକର ସମୟୋଚିତ ସଦୁପଯୋଗ ପାଇଁ ଗ୍ରାମବାସୀ, ଜନପ୍ରତିନିଧି, ସ୍ୱେଚ୍ଛାସେବୀ ଅନୁଷ୍ଠାନ, ପ୍ରଶାସନ ତଥା ଅନ୍ୟାନ୍ୟ ସଂଗଠନ ମିଳିତ ଭାବରେ ଆଗେଇ ଆସିବା ଉଚିତ। ଗ୍ରାମ ସ୍ତରରେ ସମସ୍ତଙ୍କ ସହଭାଗିତାରେ ଏକ ଉତ୍ତମ ବିକାଶ ଯୋଜନା ପ୍ରସ୍ତୁତ ହେଲେ ହିଁ ଗ୍ରାମାଞ୍ଚଳର ବିକାଶ ପ୍ରକ୍ରିୟା ତ୍ୱରାନ୍ୱିତ ହେବ। ଏଥିନିମନ୍ତେ ଗାଁର ବାସ୍ତବ ପରିସ୍ଥିତିର ଆକଳନ ହେବା ଆବଶ୍ୟକ। ସୁତରାଂ ଭିତ୍ତିଭୂମି, ମୌଳିକ ସୁବିଧା, ମାନବ କଲ୍ୟାଣ, ସମୃଦ୍ଧ ଜୀବିକା, ସାମାଜିକ ବିକାଶ ତଥା ପ୍ରାକୃତିକ ସମ୍ବଳର ପରିଚାଳନା କ୍ଷେତ୍ରରେ କ'ଣ କ'ଣ ଅଭାବ ଅସୁବିଧା ରହିଛି, ତାହାର ସଠିକ୍ ବିଶ୍ଳେଷଣ ହୋଇ ଅନୁଭୂତ ହେଉଥିବା ବାସ୍ତବ ଆବଶ୍ୟକତାକୁ ଗୁରୁତ୍ୱ ଦିଆଯିବା ଉଚିତ।

ଆମ ଗାଁ ଗଣ୍ଡା ହେଉଛି, ଦେଶର ଆତ୍ମା ଓ ଦେଶ ବିକାଶର ମୂଳଦୁଆ। ଅତଏବ, ଗ୍ରାମ ପ୍ରଗତିର ଢାଞ୍ଚା ଏପରି ହେଉ ଯେପରି ପ୍ରକୃତିର ବିଭବ କ୍ଷୟ ହେବ ନାହିଁ କିନ୍ତୁ ଗ୍ରାମୀଣ ଜୀବନର ମାନଦଣ୍ଡରେ ଉନ୍ନତି ଆସିବ। ଏହା କେତେକ ମୁଷ୍ଟିମେୟ ଲୋକଙ୍କ ପାଇଁ ଉଦ୍ଦିଷ୍ଟ ନ ହୋଇ ସମସ୍ତଙ୍କ ପାଇଁ ହେବା ଉଚିତ। ଗ୍ରାମବାସୀମାନେ ନିଜ ନିଜ ଅଞ୍ଚଳର ଅବସ୍ଥା ସୁଧାରିବା ପାଇଁ ନିଜ ନିଜର ଚିନ୍ତା, ବିଚାର ଓ କାର୍ଯ୍ୟକ୍ରମ ନେଇ ଆଗେଇ ଆସନ୍ତୁ। ଗ୍ରାମ ବିକାଶ ପ୍ରକ୍ରିୟାରେ ଏପରି କିଛି ବିଷୟ ରହିଛି, ଯାହା କାର୍ଯ୍ୟକାରୀ କରିବା ପାଇଁ ଗ୍ରାମପଞ୍ଚାୟତ ପକ୍ଷରୁ ଅର୍ଥ ବିନିଯୋଗର ସୁଯୋଗ କମ୍ ରହିଛି କିମ୍ବା ଆଦୌ ନାହିଁ। ଏହା କେବଳ ଚାଲୁ ରହିଥିବା ବିଭିନ୍ନ ବିଭାଗୀୟ ଯୋଜନାଗୁଡ଼ିକ ମଧ୍ୟରେ ଉତ୍ତମ ସମନ୍ୱୟ ତଥା ଏହାର ଉପଯୁକ୍ତ କାର୍ଯ୍ୟାନ୍ୱୟନ ଉପରେ ନିର୍ଭର କରେ। ସୁତରାଂ ଗ୍ରାମପଞ୍ଚାୟତର ବିକାଶ ଯୋଜନା ପ୍ରସ୍ତୁତ ସମୟରେ ଏହି ବ୍ୟୟ ବିହୀନ ବିକାଶମୂଳକ କାର୍ଯ୍ୟାବଳୀ ଯଥା ଅପରାଧମୁକ୍ତ, ଆଇନ୍ ଶୃଙ୍ଖଳା ସମସ୍ୟା ନ ଥିବା ଗ୍ରାମପଞ୍ଚାୟତ, ନିର୍ମଳ ଓ ସ୍ୱଚ୍ଛ ଗ୍ରାମପଞ୍ଚାୟତ, ଯୌତୁକ ମୁକ୍ତ ଗ୍ରାମପଞ୍ଚାୟତ, ଲିଙ୍ଗଗତ ଭେଦଭାବ ନଥିବା ଗ୍ରାମପଞ୍ଚାୟତ, ନିଶାମୁକ୍ତ ଗ୍ରାମପଞ୍ଚାୟତ ପୁଷ୍ଟିହୀନ ମୁକ୍ତ ଗ୍ରାମପଞ୍ଚାୟତ ଏଭଳି ଅନେକ। ବ୍ୟାପକ ଜନସଚେତନତା, ଗ୍ରାମବାସୀଙ୍କର ସକ୍ରିୟ ଭାଗିଦାରିତା, ଜନପ୍ରତିନିଧିମାନଙ୍କ ନେତୃତ୍ୱ, ସମନ୍ୱୟ ଓ ଦୃଷ୍ଟିଭଙ୍ଗୀ ଉପରେ ଏହିଭଳି କାର୍ଯ୍ୟକ୍ରମଗୁଡ଼ିକର ସଫଳତା ନିର୍ଭର କରେ। ପଲ୍ଲୀସଭା ଓ ଗ୍ରାମସଭାକୁ ଶକ୍ତିଶାଳୀ କରି ମୁକ୍ତ ଆଲୋଚନା ଓ ପର୍ଯ୍ୟାଲୋଚନା କରାଯାଇ ବିକାଶର ରୂପରେଖ ସ୍ଥିର କରାଯାଉ। ଗ୍ରାମବାସୀମାନେ ବିକାଶ ପ୍ରକ୍ରିୟାର ଅଗ୍ରଭାଗରେ ରୁହନ୍ତୁ। ବିକାଶମୂଳକ କାର୍ଯ୍ୟାବଳୀର ନିୟମିତ ତଦାରଖ ଓ ସାମାଜିକ ସମୀକ୍ଷା ହୋଇ କାର୍ଯ୍ୟାନୁଷ୍ଠାନ ନିଆଯାଉ। ତା'ହେଲେ ଯାଇ ଗାଁଗୁଡ଼ିକ ବିକାଶ ପଥରେ ଆଗେଇ ଯିବ ଏବଂ ଗାନ୍ଧିଜୀଙ୍କ 'ଗ୍ରାମ ସ୍ୱରାଜ'ର ସ୍ୱପ୍ନ ନିଶ୍ଚିତ ଭାବରେ ସାକାର ହେବ।

ପ୍ରଶିକ୍ଷକ, ରାଜ୍ୟ ଗ୍ରାମ୍ୟ ଉନ୍ନୟନ ଓ
ପଞ୍ଚାୟତିରାଜ ପ୍ରତିଷ୍ଠାନ, ଭୁବନେଶ୍ୱର



# ଆମ ସଂସ୍କୃତିରେ ଦୋଳଯାତ୍ରା ଓ ହୋଲି ଉତ୍ସବ

ସୁରେଶ କୁମାର ପ୍ରଧାନ

ଆମର ଧାର୍ମିକ ଓ ସାଂସ୍କୃତିକ ପରମ୍ପରାରେ ପର୍ବପର୍ବାଣି ପାଳନର ଧାରା ବହୁ ପ୍ରାଚୀନ । ଲୀଳା ପୁରୁଷୋତ୍ତମ ଭଗବାନ ଶ୍ରୀକୃଷ୍ଣଙ୍କ ଲୀଳା ମାଧୁର୍ଯ୍ୟକୁ ନେଇ ପାଳିତ ହୋଇଆସୁଥିବା ମହୋତ୍ସବଗୁଡିକ ମଧ୍ୟରେ 'ଦୋଳଯାତ୍ରା ଓ ହୋଲି' ଏକ ଶ୍ରେଷ୍ଠ ଗଣପର୍ବ । ଏହା ରାଧା-କୃଷ୍ଣ ଉପାସନାର ଏକ ଶ୍ରେଷ୍ଠ ପରମ୍ପରା ରୂପେ ଭାରତୀୟ ଜନଜୀବନରେ ଅପୂର୍ବ ମାଧୁର୍ଯ୍ୟର ବାର୍ତ୍ତା ପ୍ରଦାନ ପୂର୍ବକ ପ୍ରାଣେ ପ୍ରାଣେ ନବ ଉନ୍ମାଦନା ଭରିଦେବାରେ ବିଶେଷ ଭୂମିକା ନିର୍ବାହ କରିଛି ।



ଭଗବାନ ଶ୍ରୀକୃଷ୍ଣଙ୍କ ଦୋଳୋତ୍ସବ ଅଥବା ରାଧାକୃଷ୍ଣଙ୍କ ଲୀଳା ଉପାସନା ପୁରାଣ ଯୁଗରୁ ଅତ୍ୟନ୍ତ ଶ୍ରଦ୍ଧା ଓ ଭକ୍ତି ସହକାରେ ପାଳିତ ହୋଇଆସୁଅଛି । ପରମ୍ପରାକ୍ରମେ ଦୋଳୋତ୍ସବ ବସନ୍ତ କାଳର ପବିତ୍ର ମଧୁର ଲଗ୍ନରେ ପାଳିତ ହୋଇ ଧନୀ-ଦରିଦ୍ର, ଆବାଳ-ବୃଦ୍ଧ-ବନିତା ସକଳ ପ୍ରାଣରେ ଅମିୟ ଆନନ୍ଦ ଭରିଦେଇଥାଏ । ଆଜକୁ ପାଞ୍ଚହଜାର ବର୍ଷରୁ ଊର୍ଦ୍ଧ୍ୱ, ଅର୍ଥାତ୍ ଦ୍ୱାପର ଯୁଗର ଶେଷରେ ପବିତ୍ର ଦୋଳଯାତ୍ରା ଅନୁଷ୍ଠିତ ହୋଇଥିବାର ଜଣାଯାଏ । ଦ୍ୱାପର ଯୁଗର ମହାନ୍ ମାନବୀୟ ଲୀଳାରେ ଏକ ଶ୍ରେଷ୍ଠ ପର୍ବ ରୂପେ ଗୋପୀଗୋପାଳମାନେ ଉକ୍ତ ମହାନ୍ ଯାତ୍ରାର ଅୟମାରମ୍ଭ କରି ଅସରନ୍ତି ଆନନ୍ଦରେ ଉଦ୍‌ବୁଦ୍ଧ ହୋଇଉଠିଥିଲେ ।

ସଂହତି ଓ ସଦ୍‌ଭାବରେ ମହାନ୍ ଗଣପର୍ବ ଦୋଳଯାତ୍ରା ଫାଲ୍‌ଗୁନ ମାସରେ ଅନୁଷ୍ଠିତ ହୋଇଥାଏ । ଫାଲ୍‌ଗୁନ ପୂର୍ଣ୍ଣିମା ବା ଫଗୁ ପୂର୍ଣ୍ଣିମାରେ ରାଧାକୃଷ୍ଣଙ୍କ ଯୁଗଳ ମୂର୍ତ୍ତିକୁ ଦୋଳ ବିମାନରେ ବସାଇ ଗ୍ରାମ୍ୟ ପରିକ୍ରମା ପୂର୍ବକ ଏହି ମହୋତ୍ସବ ପାଳିତ ହୋଇଥାଏ । ଦକ୍ଷିଣାଭିମୁଖୀ ହୋଇ ଦୋଳିରେ ଝୁଲୁଥିବା ଦୋଳାୟମାନ ଗୋବିନ୍ଦଙ୍କୁ ଦର୍ଶନ କଲେ ମନୁଷ୍ୟ ମୁକ୍ତିଲାଭ କରିଥାଏ ବୋଲି ଧାର୍ମିକ ବିଶ୍ୱାସ ରହିଛି । ସେଥିପାଇଁ କୁହାଯାଇଛି-

ଦୋଳେଚ ଦୋଳଗୋବିନ୍ଦ ଚାପେଶ୍ଚ ମଧୁସୂଦନ,
ରଥେତୁ ବାମନଂ ଦୃଷ୍ଟ୍ୱା ପୁନର୍ଜନ୍ମ ନ ବିଦ୍ୟତେ ।

ମନୁଷ୍ୟର ସକଳ ପାପରାଶି ଦୂରୀଭୂତ ହୋଇ ମହାପୁଣ୍ୟ ଅର୍ଜନ ହୋଇଥାଏ ବୋଲି ବ୍ରହ୍ମପୁରାଣ ଅବଲମ୍ବନରେ ଜାଣିହୁଏ-

ନରୋ ଦୋଳଗତଂ ଦୃଷ୍ଟ୍ୱା ଗୋବିନ୍ଦ ତ୍ରିଦଶାର୍ଚ୍ଚିତମ୍ ।
ଫାଲ୍‌ଗୁନ୍ୟଂ ସଂଯତୋ ଭୂତ୍ୱା ଗୋବିନ୍ଦସ୍ୟ ପୁରଂ ବ୍ରଜେତ୍ ।

ଭାରତୀୟ ପରମ୍ପରାରେ ଦୋଳପୂର୍ଣ୍ଣିମାକୁ ଦୁଇଭାଗରେ ବିଭକ୍ତ କରାଯାଇଥାଏ, ଯଥା – ରାଜଦୋଳ ଓ ପଞ୍ଚୁଦୋଳ । ଫାଲ୍‌ଗୁନ ଶୁକ୍ଳଦଶମୀଠାରୁ ଅନୁଷ୍ଠିତ ହୋଇ ପୂର୍ଣ୍ଣିମା ଦିନ ସମାପ୍ତ ପର୍ବକୁ ବା ଦୋଳକୁ ରାଜଦୋଳ କୁହାଯାଉଥିବା ବେଳେ, ପୂର୍ଣ୍ଣିମାଠାରୁ ଆରମ୍ଭ ହୋଇ କୃଷ୍ଣପଞ୍ଚମୀ ପର୍ଯ୍ୟନ୍ତ ପାଳିତ ଦୋଳକୁ ପଞ୍ଚୁଦୋଳ କୁହାଯାଇଥାଏ । ପଞ୍ଚୁଦୋଳକୁ ପାଞ୍ଚଦିନିଆ ମହୋତ୍ସବ ବୋଲି କେହି କେହି କହିଥାନ୍ତି । ଉତ୍କଳୀୟ ପର୍ବପର୍ବାଣିରେ ପଞ୍ଚୁଦୋଳ, ଛଅଦୋଳ, ନଅଦୋଳ ଭଳି ଏକୋଇଶ ଦିନ ବ୍ୟାପି ଦୋଳୋତ୍ସବ ଅତି ଆନନ୍ଦ–ଉଲ୍ଲାସରେ ପାଳିତ ହୋଇଥିବା ଦୃଷ୍ଟିକୁ ଆସେ ।

ଭାରତୀୟ ସଂସ୍କୃତିରେ ଦୋଳଯାତ୍ରାର ପୌରାଣିକ ପୃଷ୍ଠଭୂମିର ସ୍ୱତନ୍ତ୍ର ମହିମା ଓ ମହତ୍ତ୍ୱ ଦୃଶ୍ୟମାନ ହୋଇଥାଏ । ଦ୍ୱାପର ଯୁଗର କଥା, ଯେତେବେଳେ ଦାନବମାନଙ୍କ ଅତ୍ୟାଚାରରେ ଧର୍ମଭାବ ନଷ୍ଟ ହୋଇ ଅଧର୍ମର ବୃଦ୍ଧି ଘଟିଲା, ତତ୍କାଳେ ଧର୍ମ ସଂସ୍ଥାପନାର୍ଥେ ସ୍ୱୟଂ ଭଗବାନ ଶ୍ରୀବିଷ୍ଣୁ ଅବତାର ଗ୍ରହଣ କରି ଲୀଳାପୁରୁଷୋତ୍ତମ କୃଷ୍ଣଭାବେ ଅବତୀର୍ଣ୍ଣ ହେଲେ । ତତ୍କାଳୀନ ଉତ୍ପୀଡ଼କ, କ୍ରୂର ଓ ଅତ୍ୟାଚାରୀ ରାଜା ଥିଲେ ମଥୁରା ନରେଶ କଂସ । ଅତ୍ୟନ୍ତ ଦର୍ପୀ ଓ ଅହଂକାରୀ କଂସର ଦୌରାତ୍ମ୍ୟ ଅସହ୍ୟ ହୋଇଉଠିଲା । ବିନାଶକାଳେ ତା'ର ବିପରୀତ ବୁଦ୍ଧି ଉଦୟ ହେଲା, ଫଳସ୍ୱରୂପ ସେ ଭଗବାନ କୃଷ୍ଣଙ୍କ ବଧ ନିମିତ୍ତ ଯୋଜନା କଲା । ତା'ର ସମସ୍ତ ଛଳ, କଳ ଓ ବଳ ବ୍ୟର୍ଥ ହେବାରୁ ଶେଷରେ ଛଳନାପୂର୍ଣ୍ଣ ଧନୁଯାତ୍ରା ଉତ୍ସବର ଆୟୋଜନ କଲା । ଆୟୋଜିତ ଧନୁଯାତ୍ରାକୁ ନିଜ ଭଣଜା କୃଷ୍ଣ–ବଳରାମଙ୍କୁ ମଥୁରାକୁ ଆଣିବାର ବ୍ୟବସ୍ଥା ମଧ୍ୟ କଂସରାଜ କରିବସିଲେ । ମାମୁଁ କଂସାସୁରର ଆମନ୍ତ୍ରଣରେ କୃଷ୍ଣ ବଳରାମ ମଥୁରା ଗମନ କଲେ ଓ କଂସକୁ ବଧ କଲେ । କଂସ ବଧ ପରେ ଦୁଇଭାଇ ମଥୁରାପୁରରୁ ଲେଉଟି ଆସିଲେ ସ୍ୱଲୀଳାକ୍ଷେତ୍ର ଗୋପପୁରକୁ । ପ୍ରବଳ ପ୍ରତାପୀ କଂସର ନିଧନ ସମ୍ବାଦ ଚତୁଃପାର୍ଶ୍ୱେ ଆନନ୍ଦର ବାତାବରଣ ସୃଷ୍ଟି କରିଥିଲା । ଏହିପରି ଏକ ମଙ୍ଗଳ ମୁହୂର୍ତ୍ତରେ ଗୋପପୁର ନରନାରୀ କୃଷ୍ଣପ୍ରେମରେ ବିହ୍ୱଳିତ ହୋଇ ମହାନନ୍ଦରେ ନୃତ୍ୟଗୀତ କରି କୃଷ୍ଣ–ବଳରାମଙ୍କ ଜୟଗାନ କରି ଆକାଶକୁ ପ୍ରକମ୍ପିତ କଲେ । ଅତ୍ୟାଚାରୀ କଂସର ମୃତ୍ୟୁରେ ଆନନ୍ଦିତ ଗୋପପୁରବାସୀ ସେହିଦିନଠାରୁ ଅବିସ୍ମରଣୀୟ ମଧୁର ମୁହୂର୍ତ୍ତର ସ୍ମାରକୀ ସଦୃଶ ପରମ୍ପରାକ୍ରମେ ବସନ୍ତ କାଳରେ ଦୋଳୋତ୍ସବ ମହାନନ୍ଦରେ ପାଳିତ ହୋଇଆସୁଛି ।

ଦୋଳ ଉତ୍ସବର ଶ୍ରେଷ୍ଠତା ଓ ମହାନତା ସମ୍ପର୍କରେ ପୁରାଣ ଶାସ୍ତ୍ରରେ ବହୁ ଆଖ୍ୟାନ ନଜରକୁ ଆସିଥାଏ । ଏ ସମ୍ପର୍କରେ 'ପଦ୍ମପୁରାଣ'ରୁ ଜାଣିହୁଏ – 'ବିଶେଷତଃ କଳିଯୁଗେ ଦୋଳୋତ୍ସବ ବିଧୀୟତେ ।

ଫାଲ୍‌ଗୁନେ ଚ ଚତୁର୍ଦ୍ଦଶ୍ୟାମଷ୍ଟମେ ଯାମ ସଂଜ୍ଞାକେ ।'

ଦୋଳପୂର୍ଣ୍ଣିମାର ଅବ୍ୟବହିତ ପୂର୍ବରୁ ଭଗବାନ କୃଷ୍ଣ ଦର୍ପୀ ଦାନବ ଶଂଖଚୂଡ ଓ ରାକ୍ଷସୀ ହୋଲିକା ଆଦିଙ୍କୁ ବଧକରି ଶାନ୍ତି ପ୍ରତିଷ୍ଠା କରିଥିବାରୁ ଗୋପୀ ଗୋପାଳମାନେ ଅତ୍ୟନ୍ତ ଭକ୍ତି ଓ ଶ୍ରଦ୍ଧାରେ ରାଧା–କୃଷ୍ଣଙ୍କୁ ଦୋଳିରେ ବସାଇ ଦୋଳଯାତ୍ରା ପାଳନ କରିଥିଲେ । ମାନବ ଜାତିର ଅତ୍ୟନ୍ତ ଶ୍ରଦ୍ଧା ଓ ସଂହତିର ପର୍ବ ଦୋଳଯାତ୍ରା ହେଉଛି ଭାରତୀୟ ସଂସ୍କୃତିର ଏକ ଶ୍ରେଷ୍ଠପର୍ବ ଓ ଆସୁରିକ ଶକ୍ତି ଉପରେ ଦୈବୀଶକ୍ତିର ବିଜୟ । ଦୋଳଉତ୍ସବର ଆଉ ଏକ ଆଖ୍ୟାନରୁ ଜଣାପଡେ, ଦ୍ୱାପର ଯୁଗରେ ଏକ ରାକ୍ଷସ ଯାହାର ନାମ ଥିଲା ମେଢ, ସେ ଅତ୍ୟନ୍ତ କ୍ରୂର ଓ ଦର୍ପୀ ସ୍ୱଭାବର ଥିଲା । ତା'ର ଅତ୍ୟାଚାରରେ ବୃନ୍ଦାବନବାସୀ ଭୟଭୀତ ଅବସ୍ଥାରେ ରହୁଥିଲେ । ବୃନ୍ଦାବନବାସୀଙ୍କୁ ଶାନ୍ତିରେ ବସବାସ କରିବାକୁ ସୁଯୋଗ ଦେବା ପାଇଁ ଭଗବାନ କୃଷ୍ଣ ସେ ମେଢ ଦାନବର ବଧ କଲେ । ବଧ ହୋଇଥିବା ମେଢ ଦାନବର ରକ୍ତରେ କୃଷ୍ଣଙ୍କୁ ଗାଧୋଇ ଦେଇ ସୁଦୃଶ୍ୟ ବିମାନରେ ବୃନ୍ଦାବନ ସାରା ପରିକ୍ରମା କରାଇଥିବାର ପୃଷ୍ଠଭୂମି ଥିବା ଜଣାଯାଏ । ସେହିଦିନଠାରୁ ଦୋଳଉତ୍ସବ ପାଳନ ଓ ତହିଁରେ ନାଲି ଅବିର ଠାକୁରଙ୍କ ଉପରେ ପକାଇବାର ପରମ୍ପରା ପ୍ରଚଳିତ ହୋଇଆସୁଛି ।

ମହାପ୍ରଭୁ ଶ୍ରୀଚୈତନ୍ୟ ଦେବଙ୍କ ଶୁଭ ଜନ୍ମତିଥି ହେଉଛି ପବିତ୍ର ଦୋଳପୂର୍ଣ୍ଣିମା ତିଥି । ବୈଷ୍ଣବ ମତାବଲମ୍ବୀମାନେ ଉକ୍ତ ପବିତ୍ର ଦିନକୁ ମହାନନ୍ଦରେ ପାଳନ କରିଆସୁଛନ୍ତି । ଚୈତନ୍ୟ ମହାପ୍ରଭୁଙ୍କ ଓଡିଶା ଅବସ୍ଥାନ କାଳରୁ ଓଡିଶା ମାଟିରେ ରାଧାକୃଷ୍ଣ

ଉପାସନା ସହିତ ଦୋଳଉତ୍ସବ ଅନୁଷ୍ଠିତ ହୋଇଆସୁଛି। ରାତ୍ରିକାଳରେ ରାଧାକୃଷ୍ଣଙ୍କ ଯୁଗଳମୂର୍ତ୍ତିକୁ ସୁସଜ୍ଜିତ ବିମାନରେ ବସାଇ ନାମ ସଂକୀର୍ତ୍ତନରେ ନଗର ପରିକ୍ରମା କରାଯାଇଥାଏ। ଦିଅଁଙ୍କଠାରେ ଚାଚେରୀ ଭୋଗ ଓ ଫଗୁ ଅର୍ପଣ କରି ଭକ୍ତ ଓ ଶ୍ରଦ୍ଧାଳୁମାନେ ଭଗବତ୍ କୃପା ଲାଭକରି ନିଜକୁ ଧନ୍ୟ ମନେକରିଥାନ୍ତି।

ପବିତ୍ର ଦୋଳ ପୂର୍ଣ୍ଣିମା ହେଉଛି ଗୋପାଳ ଜାତି ସମୂହଙ୍କ ଏକ ଶ୍ରେଷ୍ଠପର୍ବ। ଏହି ଅବସରରେ ଗୋପାଳମାନେ ଗୋ-ସମ୍ପଦ ଅଥବା ଗୋମାତାଙ୍କ ସେବା ପୂଜା ଧେନୁପୂଜା କରି ମଙ୍ଗଳ କାମନା କରିଥାନ୍ତି। ଗୋପୂଜନ ଅବସରରେ ସ୍ୱାଦିଷ୍ଟ ଭୋଜନ ସହ ନୂତନ ବସ୍ତ୍ର ପରିଧାନ ହେଉଛି ଏହି ପର୍ବର ଅନ୍ୟତମ ଅଂଶ। ନୂତନ ବସ୍ତ୍ରରେ ସଜ୍ଜିତ ଗୋପାଳମାନେ ଲଉଡ଼ି ଖେଳ କରି ଗ୍ରାମ୍ୟ ପରିକ୍ରମା ପୂର୍ବକ ଆନନ୍ଦିତ ହେବା ସହ ଏକ ମଧୁମୟ ପରିବେଶ ସୃଷ୍ଟିକରି ପଲ୍ଲୀଜୀବନକୁ କୁସୁମିତ, ଆନନ୍ଦିତ ଓ ପୁଲକିତ କରି ଗଢି ତୋଳିଥାନ୍ତି।

ଜଗତର ନାଥ ଶ୍ରୀଜଗନ୍ନାଥଙ୍କ ଦ୍ୱାଦଶଯାତ୍ରା ମଧ୍ୟରେ ଦୋଳଯାତ୍ରା ଅନ୍ୟତମ। ଶ୍ରୀମନ୍ଦିରରେ ପାଳିତ ଚତୁଃରାସ ଯଥା- ଗ୍ରୀଷ୍ମର ଚନ୍ଦନ ବା (ଚାପ), ବର୍ଷାରେ ଝୁଲଣ, କାର୍ତ୍ତିକରେ ଶରଦରାସ ଏବଂ ବସନ୍ତରେ ବାସନ୍ତିକ ରାସ ମଧ୍ୟରେ ଦୋଳପର୍ବ ଅନ୍ତର୍ଭୁକ୍ତ। ଦୋଳପର୍ବର ଆରାଧ୍ୟ ଭଗବାନ ଶ୍ରୀକୃଷ୍ଣ ହେଉଛନ୍ତି ଜଗନ୍ନାଥଙ୍କ ଅନ୍ୟ ଏକ ରୂପ। ଏ ଦୃଷ୍ଟିରେ ବୈଷ୍ଣବମାନେ ଦୋଳ ଉତ୍ସବକୁ ଶ୍ରୀମନ୍ଦିରରେ ଅତ୍ୟନ୍ତ ଶ୍ରଦ୍ଧା ଓ ନିଷ୍ଠାର ସହ ପାଳନ କରିଥାନ୍ତି। ଶ୍ରୀମନ୍ଦିରରେ ବାସନ୍ତିକ ରାସ ବା ଦୋଳୋତ୍ସବ ସମ୍ବନ୍ଧରେ ନୃସିଂହ ମନ୍ଦିର ଶିଳାଲେଖରୁ ଚୋଡ଼ଗଙ୍ଗ ରାଜତ୍ୱରେ 'ଗୋବିନ୍ଦ ଦୋଳ' ହେଉଥିବାର ପ୍ରମାଣ ମିଳେ। ଦୋଳୋତ୍ସବର ମହତ୍ତ୍ୱ ସମ୍ପର୍କରେ ଶ୍ରେଷ୍ଠଗ୍ରନ୍ଥ ଯଥା - ନୀଳାଦ୍ରି ମହୋଦୟ, ବାମଦେବ ସଂହିତା, ବ୍ରହ୍ମାଣ୍ଡ ପୁରାଣ, ଯାତ୍ରା ଭାଗବତ ଆଦିରୁ ସହଜରେ ଜାଣିହୁଏ। ଶ୍ରୀମନ୍ଦିର ନୀତି ଓ ସାମ୍ପ୍ରତିକ ପର୍ବପର୍ବାଣିର ଅତୀତକୁ ଦୃଷ୍ଟି ଦେଲେ ପ୍ରାୟ ପଞ୍ଚଦଶ ଶତାବ୍ଦୀ ପୂର୍ବରୁ ଶ୍ରୀମନ୍ଦିରର ଦକ୍ଷିଣପୂର୍ବ ପାର୍ଶ୍ୱରେ ଦୋଳମଣ୍ଡପ ନିର୍ମାଣ କରାଯାଇ ରାଧା-କୃଷ୍ଣ ଉପାସନାକୁ ସାର୍ବଜନୀନ କରାଯାଇ ଏକ ଭବ୍ୟ ପରମ୍ପରାର ଧାରାକୁ ଉଜ୍ଜୀବିତ କରାଯାଇଥିଲା।

ଦୋଳପୂର୍ଣ୍ଣିମାର ପର ଦିନ 'ହୋଲି' ପର୍ବ ଅନୁଷ୍ଠିତ ହୋଇଥାଏ। ଉକ୍ତ ଦିନ ପରସ୍ପର ଫଗୁ ବା ଅବିର ଦେଇ ଆତ୍ମୀୟତା ଜାଗରଣ କରାଇଥାନ୍ତି। ଏ ଦୃଷ୍ଟିରେ ହୋଲି ବା ରଙ୍ଗର ପର୍ବ ହେଉଛି ଏକ ସମନ୍ୱୟାତ୍ମକ ଜାତୀୟ ଗଣପର୍ବ। ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସକଳଗୋଷ୍ଠୀର ନର-ନାରୀ ହୋଲି ପର୍ବରେ ସ୍ୱ ସ୍ୱ ଆତ୍ମୀୟଙ୍କ ଗହଣରେ ରଙ୍ଗଖେଳି ମଜା ଉଠାଇଥାନ୍ତି। ଏ ଦୃଷ୍ଟିରେ ହୋଲି ଏକ ଭାଇଚାରା ସୃଷ୍ଟିକାରୀ ମହାନ୍ ଗଣପର୍ବ। ଏହା ଏକ ସାମାଜିକ ପରମ୍ପରାଭିତ୍ତିକ ପର୍ବ ହୋଇଥିଲେ ହେଁ, ବୈଜ୍ଞାନିକ ବିଚାରରେ ଏହା ଏକ ଗୁରୁତ୍ୱପୂର୍ଣ୍ଣ ବିଜ୍ଞାନସମ୍ମତ ପର୍ବ। କାରଣ ନାନାରଙ୍ଗ ସହ ଫଗୁ ବା ଅବିରରେ ବହୁ ଔଷଧୀୟ ଗୁଣ ଭରି ରହିଛି, ଯାହା କି ଶରୀରର ଚର୍ମରୋଗକୁ ସହଜରେ ଦୂର କରିଥାଏ। ରଙ୍ଗ ହେଉଛି ପ୍ରେମ ଓ ପବିତ୍ରତାର ଶ୍ରେଷ୍ଠ ପ୍ରତୀକ ବୋଲି ଜନମାନସରେ ବିଶ୍ୱାସ ରହିଛି।

ଦୋଳପୂର୍ଣ୍ଣିମା ଏବଂ ହୋଲି ଉଭୟ ହେଉଛି ପ୍ରେମ, ଭକ୍ତି, ସ୍ନେହ-ଶ୍ରଦ୍ଧା, ସମନ୍ୱୟ, ସଦ୍‌ଭାବନା ଓ ଆତ୍ମୀୟତାର ପର୍ବ। ଏହି ମଧୁର ପର୍ବ ପାଳନ ପରିପ୍ରେକ୍ଷୀରେ ଦ୍ୱେଷ, ବାଦ, ମାନ, ଅଭିମାନ ଦୂରୀଭୂତ ହୋଇ ଭ୍ରାତୃଭାବ ଉଦ୍ରେକପୂର୍ବକ ଜାତୀୟତାବୋଧର ଉନ୍ମେଷ ହୋଇଥାଏ। ତେଣୁ ସାମାଜିକ ପରମ୍ପରାରେ ଏହି ପର୍ବ ଏକ ଆତ୍ମୀକ ଆଲୋଡ଼ନ ସୃଷ୍ଟି କରି ବସନ୍ତ ଋତୁର ଶୋଭା ସମ୍ପଦକୁ ଉପଭୋଗ୍ୟ କରାଇ ଆଧ୍ୟାତ୍ମିକ ଚେତନାରେ ଜୀବ ଓ ଜୀବଜଗତକୁ ଉଦ୍‌ବୁଦ୍ଧ କରାଇଥାଏ।

ଖୁଣ୍ଟୁଣୀ, ଆଠଗଡ଼, କଟକ



# ଶତାବ୍ଦୀର ମହାନାୟକ ପ୍ରବାଦପୁରୁଷ ବିଜୁ ପଟ୍ଟନାୟକ

**ବବିତା ଦାସ**

ଓଡ଼ିଶା ରାଜନୀତିର ଜଣେ ଉତ୍ତୁଙ୍ଗ ବ୍ୟକ୍ତିତ୍ୱ କହିଲେ ଯେ କେହି ସର୍ବପ୍ରଥମେ ପ୍ରବାଦପୁରୁଷ ବିଜୁ ପଟ୍ଟନାୟକଙ୍କ ନାମକୁ ସ୍ମରଣ କରିବ। ବିଜୁ ବାବୁ ଥିଲେ କଳିଙ୍ଗର ସ୍ୱାଭିମାନୀ ପୁରୁଷ । ସେ ଓଡ଼ିଶା ମାଟିକୁ ଗର୍ବିତ କରିଛନ୍ତି ଜାତୀୟ ଓ ଆନ୍ତର୍ଜାତିକ ସ୍ତରରେ । ଯଥାର୍ଥରେ ସେ ଥିଲେ ବିଂଶ ଶତାବ୍ଦୀର ବିସ୍ମୟ ଓ ଶତାବ୍ଦୀର ମହାନାୟକ । ବିଜୁବାବୁଙ୍କ ଭଳି ଜଣେ ପ୍ରଚଣ୍ଡ ଦେଶଭକ୍ତ, ମହାନ୍ ଜନନାୟକ ଓ ଦୁର୍ଦ୍ଧର୍ଷ ବୈମାନିକଙ୍କୁ ଉତ୍କଳ ମାଟି ଜନ୍ମ ଦେଇ ଧନ୍ୟ ହୋଇଛି। ପ୍ରତିଟି ଓଡ଼ିଆଙ୍କ ପ୍ରାଣରେ ଓ କୋଟି ଓଡ଼ିଆଙ୍କ ପ୍ରିୟନେତା ବିଜୟାନନ୍ଦ ପଟ୍ଟନାୟକ ଥିଲେ କଳିଙ୍ଗର ମୁକୁଟ ବିହୀନ ସମ୍ରାଟ ଓ ଓଡ଼ିଆ ଜାତିର ଦ୍ୱିତୀୟ ଖାରବେଳ।



ଓଡ଼ିଶାର ଐତିହ୍ୟ, ସଂସ୍କୃତି ଓ ସାହିତ୍ୟର ବାର୍ତ୍ତାବହ ରୂପେ ସ୍ୱତନ୍ତ୍ର ପରିଚିତି ଲାଭ କରିଥିବା ହଜାର ବର୍ଷର ପ୍ରାଚୀନ ସହର କଟକରେ ଏହି ଯୋଗଜନ୍ମା ବ୍ୟକ୍ତିଙ୍କ ଜନ୍ମ । ତାଙ୍କର ଜନ୍ମ ୧୯୧୬ ମସିହା ମାର୍ଚ୍ଚ ୫ ତାରିଖରେ କଟକସ୍ଥିତ 'ଆନନ୍ଦଭବନ'ରେ। ପିତା ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଓ ମାତା ଆଶାଲତା ଦେବୀଙ୍କ ସୁଯୋଗ୍ୟ ସନ୍ତାନ ରୂପେ ଭୂମିଷ୍ଠ ହୋଇ ଓଡ଼ିଶାର ମାଟି, ପାଣି ଓ ପବନକୁ ଧନ୍ୟ କରିଥିଲେ । ବାଲ୍ୟାବସ୍ଥାରୁ ତାଙ୍କଠାରେ ଅସାଧାରଣ ପ୍ରତିଭାର ପରିଚୟ ମିଳିଥିଲା । ନିର୍ଭୀକତା ଓ ଖେଳୁଆଡ଼ ମନୋଭାବ ଯୋଗୁଁ ଉଭୟ ସହପାଠୀ ଓ ଶିକ୍ଷକ ତାଙ୍କୁ ବହୁ ଶ୍ରଦ୍ଧା କରୁଥିଲେ। ସେ ଥିଲେ ଅତ୍ୟନ୍ତ ମେଧାବୀ ଛାତ୍ର । ଓଡ଼ିଶାର ସମ୍ଭ୍ରାନ୍ତ ଓ ସୁନାମଧନ୍ୟ ଶିକ୍ଷାନୁଷ୍ଠାନ ରେଭେନ୍ସା କଲେଜରୁ ସେ ଆଇ.ଏସ୍‌ସି ପାସ୍ କରିଥିଲେ । କଟକରେ ବିଦ୍ୟାର୍ଥୀ ଭାବେ ସେ ଦେଶପ୍ରେମର ମହାନ୍ ପ୍ଳାବନରେ ନିଜକୁ ଉଦ୍‌ବୁଦ୍ଧ କରିବାର ସମସ୍ତ ଅଭିଜ୍ଞତାକୁ ହାସଲ କରି ପରବର୍ତ୍ତୀ କାଳରେ ଦେଶ ମାତୃକାର ସେବାରେ ନିଜକୁ ଉତ୍ସର୍ଗ କରିଥିଲେ। ଆଧୁନିକ ଓଡ଼ିଶାର ଜଣେ ସଫଳ ଓ ଶ୍ରେଷ୍ଠ ବିଦ୍ଧାଣି କହିଲେ ଆମେ ବିଜୁବାବୁଙ୍କୁ ଜାଣୁ। ଛାତ୍ରାବସ୍ଥାରୁ

ସେ ଦେଖିଥିଲେ ଓଡ଼ିଆ ଜାତିର ବିକାଶର ସ୍ୱପ୍ନ । ବାଲ୍ୟକାଳରୁ ତାଙ୍କଠାରେ ଥିବା ବହୁମୁଖୀ ପ୍ରତିଭାର ସ୍ଫୁରଣ ହୋଇଥିଲା । ରେଭେନ୍ସାରେ ଆଇ.ଏସ୍‌ସିର ଦ୍ୱିତୀୟ ବାର୍ଷିକ ଛାତ୍ର ଥିବାବେଳେ ସେ ନିଜ ସାଙ୍ଗ ଅମର ଦେଓ ଭ୍ରମରବର ସାହୁଙ୍କ ସହ କଟକରୁ ପେଶାଓ୍ୱାର ଦୀର୍ଘପଥ ସାଇକେଲ ଯୋଗେ ଯାଇଥିଲେ । କଟକ ଯୋବ୍ରା ଘାଟରୁ ବାହାରି ଆଜିର (ପାକିସ୍ତାନ) ସେସମୟର ପେଶାଓ୍ୱାର ଯାଇଥିଲେ । ତାଙ୍କର ଏହି ଦୁଃସାହସିକ ସାଇକେଲ ଯାତ୍ରା ପରବର୍ତ୍ତୀ ଜୀବନରେ ଜଣେ ଦୁର୍ଦ୍ଧର୍ଷ ବୈମାନିକ ହେବାର ସୁଯୋଗ ଆଣିଦେଇଥିଲା । ବି.ଏସ୍‌ସି ପଢୁଥିବାବେଳେ ଜଣେ ବୈମାନିକ ହେବାର ଆଶାପୋଷଣ କରି ଟ୍ରେନିଂ ନେଇ ଇଣ୍ଡିଆନ୍ ନ୍ୟାସନାଲ ଏୟାରୱେଜ୍‌ରେ ପାଇଲଟ୍ ରୂପେ ଯୋଗ ଦେଇଥିଲେ । ବିଜୁବାବୁ ଥିଲେ ଆମ ମାଟିର ଜଣେ ଦକ୍ଷ ଓ ସୁନାମଧନ୍ୟ ପାଇଲଟ୍, ଯାହା ଓଡ଼ିଶାର ନାମକୁ ଆନ୍ତର୍ଜାତିକ ସ୍ତରରେ ପହଞ୍ଚାଇଛି । ଗୌରବର କଥା, ଜାତୀୟ ସ୍ତରରେ ବିଜୁବାବୁ ନିଜକୁ ପ୍ରତିଷ୍ଠା କରି ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁଙ୍କ ଅତ୍ୟନ୍ତ ପ୍ରିୟ ହୋଇଥିଲେ । ଜଣେ ଦକ୍ଷ ପାଇଲଟ୍ ହୋଇ ବିଦେଶ ମାଟି ଇଣ୍ଡୋନେସିଆରୁ ଲାଭ କରିଥିଲେ ସର୍ବୋଚ୍ଚ ସମ୍ମାନ 'ଭୂମିପୁତ୍ର'।

ଭାରତର ଅବିଚ୍ଛେଦ୍ୟ ଅଙ୍ଗ ହେଉଛି କାଶ୍ମୀର । ଏହି କାଶ୍ମୀରକୁ ବିଜୁବାବୁ ଅତ୍ୟନ୍ତ ଶ୍ରଦ୍ଧା କରୁ କରୁ ଶେଷରେ କାଶ୍ମୀରର ଏକ ସମ୍ଭ୍ରାନ୍ତ ପରିବାରର ଜ୍ଞାନଦେବୀଙ୍କୁ ବିବାହ କଲେ । ଜ୍ଞାନଦେବୀଙ୍କ ଭଳି ଜଣେ ସର୍ବଗୁଣସମ୍ପନ୍ନା ଗୁଣବତୀଙ୍କୁ ପତ୍ନୀ ରୂପେ ପାଇ ବିଜୁଙ୍କ ଜୀବନପଥ ସରସ ଓ ସୁନ୍ଦର ହୋଇ ଉଠିଲା । ବିବାହର ମାତ୍ର ୩ବର୍ଷ ପରେ ବିଜୁଙ୍କୁ ଗିରଫ କରାଗଲା ଜଣେ ସ୍ୱାଧୀନତା ସଂଗ୍ରାମୀ ହିସାବରେ । ପରାଧୀନ ଭାରତବର୍ଷର ସେ ଥିଲେ ସାଲିସ୍‌ବିହୀନ ସଂଗ୍ରାମୀ । ବ୍ରିଟିଶ୍ ସରକାରଙ୍କ ଦମନମୂଳକ ନୀତିକୁ ସେ ବିରୋଧ କରି ଇଂରେଜ ସରକାରଙ୍କ କୋପଦୃଷ୍ଟିକୁ ଆସିଥିଲେ।

ଜନ୍ମମାଟି ଓଡ଼ିଶାକୁ ଶିଳ୍ପ ସମୃଦ୍ଧ କରିବା ପାଇଁ ସେ ଦେଖିଥିଲେ ସ୍ୱପ୍ନ ଆଉ ଜୀବନରେ ପୂରଣ କରିଥିଲେ ମଧ୍ୟ ତାହାକୁ । ୧୯୬୧ରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଭାବେ ରାଜ୍ୟ ଶାସନର ଭାର ନେଲେ ବିଜୁବାବୁ । ତାଙ୍କ ମୁଖ୍ୟମନ୍ତ୍ରିତ୍ୱ କାଳରେ ଓଡ଼ିଶାରେ ନିର୍ମାଣ ଯୁଗର ଅୟମାରମ୍ଭ ହେଲା ବୋଲି ସ୍ୱୀକାର କରିବାକୁ ହେବ । ତାଙ୍କର ଏକନିଷ୍ଠ ଉଦ୍ୟମ ଓ ଆନ୍ତରିକତାର ଫଳ ହେଉଛି ଓଡ଼ିଶାରେ ପାରାଦ୍ୱୀପ ବନ୍ଦର ନିର୍ମାଣ । ଜାତୀୟ ସ୍ତରରେ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁଙ୍କ ସହ ଅନ୍ତରଙ୍ଗ ହୋଇ ପାରାଦ୍ୱୀପ ବନ୍ଦରର ଶୁଭ କାର୍ଯ୍ୟ ସମାପନ କରାଇଥିଲେ । ସେହିପରି ତାଙ୍କ ଉଦ୍ୟମରେ ଚୌଦ୍ୱାରଠାରେ ସ୍ଥାପିତ ହୋଇଥିଲା ଲୁଗାକଳ ଓ 'କଳିଙ୍ଗ ଟ୍ୟୁବସ୍' । ଏତଦ୍‌ବ୍ୟତୀତ କୋରାପୁଟର ସୁନାବେଡାଠାରେ ମିଗ୍ ବିମାନ କାରଖାନା, ଭୁବନେଶ୍ୱରସ୍ଥ ସୈନିକ ସ୍କୁଲ, ଆଞ୍ଚଳିକ ଶିକ୍ଷା ପ୍ରତିଷ୍ଠାନ ଓ ଆଞ୍ଚଳିକ ଗବେଷଣା କେନ୍ଦ୍ର ତାଙ୍କ ଉତ୍କଳପ୍ରାଣର ଜ୍ୱଳନ୍ତ ଉଦାହରଣ ।

ଅତୀତରେ ଓଡ଼ିଶାର ନାମ ଥିଲା 'କଳିଙ୍ଗ' । ତେଣୁ ସେ ଏହି କଳିଙ୍ଗ ନାମକୁ ଭାରି ଶ୍ରଦ୍ଧା କରୁଥିଲେ । ଓଡ଼ିଆ ଜାତିର ସ୍ୱାଭିମାନର ସୁରକ୍ଷା ନିମିତ୍ତ ତାଙ୍କ ଦ୍ୱାରା ପ୍ରକାଶ ପାଇଥିଲା ଦୈନିକ ଖବରକାଗଜ 'କଳିଙ୍ଗ' । କଳିଙ୍ଗ ଖବରକାଗଜର ସମ୍ପାଦନା ଦାୟିତ୍ୱ ବହୁ ଜ୍ଞାନୀଗୁଣୀଙ୍କ ଦ୍ୱାରା ସମ୍ପନ୍ନ ହୋଇଥିଲା । ମହାନ୍ ସଂଗ୍ରାମୀ ମନମୋହନ ମିଶ୍ରଙ୍କ ପରେ ମହାନ୍ କଥାକାର ଓ ରାଜନେତା ସୁରେନ୍ଦ୍ର ମହାନ୍ତି 'କଳିଙ୍ଗ'ର ସମ୍ପାଦକ ହୋଇଥିଲେ । ସତ୍ୟ, ନିର୍ଭୀକ ଓ ସଂସ୍କାରଧର୍ମୀ ଖବର ପରିବେଷଣ କରି ତତ୍କାଳୀନ ଓଡ଼ିଶାକୁ ନୂତନ ମାର୍ଗ ଦର୍ଶାଇଥିଲା 'କଳିଙ୍ଗ'। ସତ କହିବାକୁ ଗଲେ ବିଜୁବାବୁ ଏକମାତ୍ର ଓଡ଼ିଆ ଯେ କଳିଙ୍ଗ ନାମକୁ ବିଶ୍ୱ ଦରବାରକୁ ନେଇ ଯାଇଥିଲେ । ୧୯୫୧ ମସିହାରେ ବିଜୁବାବୁ 'କଳିଙ୍ଗ ପୁରସ୍କାର' ପ୍ରତିଷ୍ଠା କରିଥିଲେ। ଆମ ମାଟି ପାଇଁ ଗର୍ବର କଥା ଏହିକି ୟୁନେସ୍କୋର ମହାନିର୍ଦ୍ଦେଶକ ପ୍ରତିବର୍ଷ କଳିଙ୍ଗ ପୁରସ୍କାର ବିଜେତାଙ୍କ ନାମ ଘୋଷଣା କରିଥାନ୍ତି ।

୧୯୯୦ ମସିହାରେ ଜନତାଦଳ ପ୍ରାର୍ଥୀଭାବେ ବିଜୁବାବୁ ଭୁବନେଶ୍ୱର ବିଧାନସଭାକୁ ନିର୍ବାଚିତ ହୋଇ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେବାର ଗୌରବ ଲାଭ କଲେ । ସେହିପରି ୧୯୯୫ରେ ବିଜୁବାବୁ ବିରୋଧୀଦଳର ନେତା ପଦ ଅଳଙ୍କୃତ କଲେ ।

ଓଡ଼ିଶାରେ ପଞ୍ଚାୟତିରାଜ ବ୍ୟବସ୍ଥାକୁ ଲୋକାଭିମୁଖୀ

ଓ କଲ୍ୟାଣମୁଖୀ କରାଇବାରେ ବିଜୁବାବୁଙ୍କ ଭୂମିକା ଥିଲା ଅବର୍ଣ୍ଣନୀୟ । ତାଙ୍କ ଦୃଢ଼ ନେତୃତ୍ୱରେ ୧୯୬୨ ମସିହାରେ ପଞ୍ଚାୟତ ନୀତି ପ୍ରଚଳନ ହେଲା । ବିଜୁବାବୁଙ୍କ ପ୍ରଥମ ମୁଖ୍ୟମନ୍ତ୍ରିତ୍ୱରେ ବାଲିମେଳା-ପ୍ରୋଜେକ୍ଟ, ତାଳଚେର ଥର୍ମାଲ, ବରଗଡ଼ ସିମେଣ୍ଟ କାରଖାନା, ବାଲିମେଳା ଡ୍ୟାମ୍, ୧୩ ଜିଲ୍ଲାରୁ ୩୦ଜିଲ୍ଲା କରାଇବାରେ ବିଜୁବାବୁ ଚିରସ୍ମରଣୀୟ । ତାଙ୍କ ଜନ୍ମ ତିଥି ମାର୍ଚ୍ଚ ୦୫ ତାରିଖକୁ ଓଡ଼ିଶା ସରକାର 'ପଞ୍ଚାୟତିରାଜ ଦିବସ' ରୂପେ ପାଳନ କରିଆସୁଛନ୍ତି ।

ଓଡ଼ିଶାର ମହିଳାମାନଙ୍କ ବିକାଶ ପାଇଁ ବିଜୁବାବୁ ବହୁ ପଦକ୍ଷେପମାନ ଗ୍ରହଣ କରିଥିଲେ । ନାରୀ ଆତ୍ମନିର୍ଭରଶୀଳା ହୋଇପାରିଲେ ଦେଶ ଓ ଜାତି ଆଗେଇବ ବୋଲି ତାଙ୍କର ଦୃଢ଼ ବିଶ୍ୱାସ ଥିଲା । ନାରୀ ଶିକ୍ଷାକୁ ସେ ଗୁରୁତ୍ୱ ଦେଇ ତାଙ୍କ ଶାସନ କାଳରେ ବହୁ ମହିଳା ମହାବିଦ୍ୟାଳୟ, ବାଳିକା ବିଦ୍ୟାଳୟ, ମହିଳା ପ୍ରଶିକ୍ଷଣ ମହାବିଦ୍ୟାଳୟ ପ୍ରତିଷ୍ଠା କରାଇଥିଲେ । ତାଙ୍କ ମୁଖ୍ୟମନ୍ତ୍ରିତ୍ୱ କାଳରେ ଅଧିକ ହରିଜନ ଓ ଆଦିବାସୀ ଛାତ୍ରୀ ବୃତ୍ତି ଲାଭ କରି ଉଚ୍ଚଶିକ୍ଷା ପାଇପାରିଥିଲେ । ତାଙ୍କ ସମୟରେ ମହିଳା ବିକାଶ ନିଗମ ସ୍ଥାପିତ ହୋଇ ମହିଳାଙ୍କୁ ଆତ୍ମନିର୍ଭରଶୀଳ ହେବାର ମାର୍ଗ ଦର୍ଶାଇଥିଲା । 'ଗାଁକୁ କାମ, ମାଆକୁ ସମ୍ମାନ' ଥିଲା ବିଜୁବାବୁଙ୍କ ଡାକରା । ସେହିପରି ତାଙ୍କରି ସମୟରେ ଯୌତୁକ ପ୍ରଥାକୁ କଡ଼ାକଡ଼ି କରାଯାଇଥିଲା, ତେଣୁ ସେ 'ଶାଶୁ ହାତକଡ଼ି ନଣନ୍ଦ ବେଡି' ଭଳି ସ୍ଲୋଗାନ ପ୍ରଚଳନ କରିଥିଲେ । ସମାଜରେ ମହିଳାମାନଙ୍କ ସ୍ୱାଭିମାନ ଓ ସ୍ୱାର୍ଥରକ୍ଷା ପାଇଁ ସେ ଓଡ଼ିଶାରେ ମହିଳା ଆୟୋଗ ପ୍ରତିଷ୍ଠା କରିଥିଲେ । ମାତୃ ଜାତିର ଉନ୍ନତି ପାଇଁ ମହିଳା ସମୃଦ୍ଧି ଯୋଜନା କାର୍ଯ୍ୟକାରୀ ହେଲା । ରାଜନୈତିକ କ୍ଷେତ୍ରରେ ମହିଳାମାନଙ୍କ ସଶକ୍ତିକରଣକୁ ବିଜୁବାବୁ ସମର୍ଥନ କରି ବହୁ ଯୁଗାନ୍ତକାରୀ ପଦକ୍ଷେପମାନ ଗ୍ରହଣ କରିଥିଲେ । ମହିଳାମାନଙ୍କୁ ଶିକ୍ଷା ଓ ସ୍ୱାସ୍ଥ୍ୟ କ୍ଷେତ୍ରରେ ନିଯୁକ୍ତି ଦେବା ଅଭିନବ ପଦକ୍ଷେପ ଥିଲା । ବିଜୁବାବୁ ବାସ୍ତବରେ ଓଡ଼ିଶା ମାଟିର ସ୍ୱପ୍ନଦ୍ରଷ୍ଟା ଥିଲେ ।

ବାଣୀକଣ୍ଠ ନଗର, ଆଠଗଡ



# ଉତ୍କଳୀୟ ଅସ୍ମିତାର ଉଦ୍‌ଘୋଷକ : ଶ୍ରୀମଦ୍ ଭାଗବତ

ରମାକାନ୍ତ ନାୟକ

ଗଜପତି ପ୍ରତାପରୁଦ୍ର ଦେବଙ୍କ ପ୍ରାଣତ୍ୟାଗ ପରେ ଓଡ଼ିଶାର ରାଜନୈତିକ ଓ ସାଂସ୍କୃତିକ ଆକାଶରେ ଦୁର୍ଦ୍ଦିନର କଳାବାଦଲ ଘୋଟି ଆସିଥିଲା । ପ୍ରତାରଣା, ବିଶ୍ୱାସଘାତକତା ଓ ରକ୍ତର ହୋରିଖେଳ ଲାଗି ରହିଥିଲା ଅନ୍ୟ ଏକ ଯୁଗ ପର୍ଯ୍ୟନ୍ତ । କେହି ଜଣେ ପରାକ୍ରମୀ ନରପତି ସୂର୍ଯ୍ୟବଂଶୀୟ ଗଜପତି ସାମ୍ରାଜ୍ୟକୁ ଏହି ଦୁର୍ଦ୍ଦିନରୁ ଉଦ୍ଧାର କରିବାକୁ ଆବିର୍ଭାବ ହୋଇନଥିଲେ । ସାମନ୍ତ ରାଜାମାନଙ୍କ ମଧ୍ୟରେ କ୍ଷମତା ହାସଲ ପାଇଁ ତୁମୁଳ ସଂଘର୍ଷ, ମୁସଲମାନମାନଙ୍କ ଅବାରିତ ଆକ୍ରମଣର ଲୋମହର୍ଷଣକାରୀ ଆତଙ୍କ ଓ ତୀବ୍ର ଅର୍ଥନୈତିକ ସଂକଟ ମଧ୍ୟଯୁଗୀୟ ଓଡ଼ିଶାକୁ ବିପର୍ଯ୍ୟୟ ଆଡ଼କୁ ଟାଣି ନେଇଥିଲା । ୧୫୬୮ ଖ୍ରୀ.ରେ ମୁକୁନ୍ଦଦେବଙ୍କ ହତ୍ୟା ସହିତ ଓଡ଼ିଶାରେ ମୁସଲମାନ ରାଜତ୍ୱର ଆରମ୍ଭ ହୋଇ ଓଡ଼ିଶାରେ ସ୍ୱାଧୀନତାର ରବି ଅସ୍ତମିତ ହୋଇଗଲା । ଓଡ଼ିଶାର ମରହଟ୍ଟାମାନଙ୍କ ଶାସନ ମୁସଲମାନମାନଙ୍କ ଅତ୍ୟାଚାରମୂଳକ ଶାସନର ଅନୁରୂପ କଳଙ୍କିତ ଥିଲା । ନାଗପୁର ଭୋଁସଲାମାନେ ନିଜ ଅସୀମ ଆକାଂକ୍ଷାର ପରିପୂରଣ ପାଇଁ ଓଡ଼ିଶାକୁ ଏକ କାମଧେନୁ ସଦୃଶ ବିବେଚନା କରୁଥିଲେ । ଆଫଗାନ, ମୋଗଲ, ମରହଟ୍ଟା ଓ ଇଂରେଜମାନଙ୍କ ରାଜତ୍ୱ କାଳରେ ଓଡ଼ିଶା ଗୋଟିଏ ଭୌଗଳିକ ନାମମାତ୍ର ଭାବରେ ସୂଚୀତ ହେଉଥିବା ବେଳେ ଓଡ଼ିଆଭାଷୀମାନେ ବଙ୍ଗ, ବିହାର, ମଧ୍ୟପ୍ରଦେଶ ଓ ମାନ୍ଦ୍ରାଜରେ ବିଚ୍ଛିନ୍ନ ଓ ବିକ୍ଷିପ୍ତ ହୋଇ ରହିଥିଲେ । ଓଡ଼ିଶାର ଗଡ଼ଜାତ ଅଞ୍ଚଳରେ ଓଡ଼ିଆଭାଷୀମାନେ ବସବାସ କରୁଥିଲେ ମଧ୍ୟ ଓଡ଼ିଶା ସହିତ ସେମାନଙ୍କର ସାଂସ୍କୃତିକ ସମ୍ବନ୍ଧ ଅତ୍ୟନ୍ତ ଶିଥିଳ ଥିଲା । କଟକ, ପୁରୀ ଓ ବାଲେଶ୍ୱର ଅଞ୍ଚଳ ଓଡ଼ିଶା ନାମରେ ପରିଚିତ ହୋଇଥିଲେ ହେଁ ଏ ଅଞ୍ଚଳରେ ଓଡ଼ିଆମାନଙ୍କର କୌଣସି ପ୍ରକାର କର୍ତ୍ତୃତ୍ୱ ନଥିଲା । ସମସ୍ତ ପ୍ରକାର ବାଣିଜ୍ୟ, ସରକାରୀ ପଦପଦବୀ ଓ ପ୍ରାୟ ସମସ୍ତ ଜମିଦାରୀ ଅଣଓଡ଼ିଆମାନଙ୍କ ହସ୍ତଗତ ହୋଇଥିଲା । ଏକଦା ଗଙ୍ଗାଠାରୁ ଗୋଦାବରୀ ନଦୀ ପର୍ଯ୍ୟନ୍ତ ବ୍ୟାପ୍ତ ଓଡ଼ିଶାର ବିସ୍ତୀର୍ଣ୍ଣ ପରିସୀମା ଏକ ବିଖଣ୍ଡିତ ସଙ୍କୁଚିତ, କ୍ଷୁଦ୍ର ଭୂଖଣ୍ଡରେ ପରିଣତ ହୋଇଥିବା ବେଳେ, ବାତ୍ୟା, ବନ୍ୟା ଓ ଦୁର୍ଭିକ୍ଷର କରାଳ ବିଭୀଷିକାରେ ସଦାସର୍ବଦା ଆକ୍ରାନ୍ତ ହେଉଥିଲା । ୧୮୬୬ ଖ୍ରୀ.ର ନଅଙ୍କ ଦୁର୍ଭିକ୍ଷ ପରିଶେଷରେ ଓଡ଼ିଶାର ଅର୍ଥନୈତିକ ମେରୁଦଣ୍ଡକୁ ବିଧ୍ୱସ୍ତ କରିଦେଲା ।

ଯେତେବେଳେ ଓଡ଼ିଶାର ରାଜନୈତିକ, ଅର୍ଥନୈତିକ ଓ ସାଂସ୍କୃତିକ ସ୍ଥିତି ଉତ୍କଟ ସଙ୍କଟ ଓ ବିପର୍ଯ୍ୟୟ ମଧ୍ୟରେ ଭାରସାମ୍ୟ ହରାଇ ବସିଥିଲା, ସେତେବେଳର ଏହି ଦୁର୍ଦ୍ଦିନରେ ଓଡ଼ିଆମାନଙ୍କୁ ଏକତା ଓ ଭ୍ରାତୃତ୍ୱର ସୂତ୍ରରେ ବାନ୍ଧି ରଖିବାରେ ସକ୍ଷମ ହୋଇଥିଲେ ଓଡ଼ିଆ ଜାତିର ଇଷ୍ଟଦେବତା ଶ୍ରୀଜଗନ୍ନାଥ ଓ ଇଷ୍ଟକବି ଜଗନ୍ନାଥ ଦାସଙ୍କ ରଚିତ ଇଷ୍ଟଗ୍ରନ୍ଥ 'ଶ୍ରୀମଦ୍ ଭାଗବତ' । ଏହି ଦୁଇ ଅମୃତମୟ ଅମୂଲ୍ୟ ସମ୍ପଦ ଥିଲା ଓଡ଼ିଆମାନଙ୍କ ମଧ୍ୟରେ ଭକ୍ତି, ପ୍ରେରଣା, ସାହସ, ସ୍ପନ୍ଦନ ଓ ଆଶ୍ୱାସନା ଜାଗରଣର ମୌଳିକ ଉତ୍ସ । ଦୀର୍ଘ ଚାରି ଶତାବ୍ଦୀର ନିରନ୍ଧ୍ର ଅନ୍ଧକାରମୟ କାଳରାତ୍ରୀ ଯେତେବେଳେ ଓଡ଼ିଆ ଜାତିର ତେଜମୟ ପ୍ରାଣକୁ ନିଃଶେଷ କରିବାକୁ ପ୍ରୟାସ କରୁଥିଲା, ସେତେବେଳେ ଓଡ଼ିଆ ଜାତିର ସେହି ମୁମୂର୍ଷୁ ଅସ୍ମିତାକୁ ବଞ୍ଚାଇ ରଖିବାକୁ ତାଳ, ନଡ଼ିଆ, ବାଉଁଶ ଘେରା ଅସୁମାରୀ ପଲ୍ଲୀର ଚାଳ ଛପର ଭାଗବତ ଘରମାନଙ୍କରୁ ଉଦ୍ଭାସିତ ହେଉଥିଲା

ମିଞ୍ଜି ମିଞ୍ଜି ପ୍ରଦୀପରୁ ବିଚ୍ଛୁରିତ ଆଲୋକ ରଶ୍ମି । ଓଡ଼ିଆ ଜାତିର ଅସ୍ମିତା ଓ ଜୀବନୀ ଶକ୍ତି ତାହାରି ମଧ୍ୟରେ ହିଁ ବଞ୍ଚିରହିଥିଲା ପୁନର୍ବାର ଏ ଜାତିର ନୂତନ ସୂର୍ଯ୍ୟ ଉଦୟ ହେବା ପର୍ଯ୍ୟନ୍ତ । ଯେତେବେଳେ କ୍ଷତ୍ରିୟ ତରବାରୀ ନିସ୍ତେଜ ଓ ଶକ୍ତିହୀନ, ଶାସକ ଦୁର୍ବଳ, ଅପାରଗ, ସେତେବେଳେ ଭକ୍ତକବି ଜଗନ୍ନାଥ ଦାସ ତାଙ୍କ ପୋଥିର ଆଧ୍ୟାତ୍ମିକ ଡ଼ୋରିରେ ଗୋଟିଏ ଆତ୍ମବିଶ୍ୱାସ ହରାଇଥିବା ବିଶାଳ ଗୌରବମୟ ବୀର ଜାତିକୁ ଏତେ ଦୀର୍ଘକାଳ ବ୍ୟାପୀ ଏକତାର ରଜ୍ଜୁରେ ଯେ ବାନ୍ଧି ରଖିଥିଲେ, ତାହା ଏବେ ବିଶ୍ୱାସ କରିହୁଏ ନାହିଁ । ରାଜନୈତିକ ନେତୃତ୍ୱର ଘୋର ସଂକଟ କାଳରେ ଏହି ଜାତି ସମ୍ମୁଖୀନ ହୋଇଥିବା ଚରମ ଆହ୍ୱାନକୁ ଗ୍ରହଣ କରି ଆଧ୍ୟାତ୍ମିକ ନେତୃତ୍ୱ ପ୍ରଦାନ କରି ସେ ଯେଉଁ ଅକ୍ଷୟ କୀର୍ତ୍ତି ସଂସ୍ଥାପନ କରିଦେଇଗଲେ, ତାହାର ଦୃଷ୍ଟାନ୍ତ ଅନ୍ୟତ୍ର ଦୃଷ୍ଟିଗୋଚର ହୁଏ ନାହିଁ । ଏପରି ଯଶ ଗୌରବ, ଶ୍ରଦ୍ଧା, ଭକ୍ତି ଓ ସମ୍ମାନ ତାଙ୍କ ରଚିତ ଭାଗବତ ବ୍ୟତୀତ ଓଡ଼ିଆ ଭାଷା ସାହିତ୍ୟରେ ଅନ୍ୟ କୌଣସି ସୃଷ୍ଟିର ଭାଗ୍ୟରେ ଅଦ୍ୟାବଧି ସମ୍ଭବ ହୋଇପାରି ନାହିଁ ।

ଅତୀତରେ ଓଡ଼ିଆ ଜନଜୀବନ ତଥା ଐତିହ୍ୟସମ୍ପନ୍ନ ଉତ୍କଳୀୟ ସଂସ୍କୃତିର ମୁଖଶାଳା ଥିଲା ଭାଗବତ ଘର । ଆଧ୍ୟାତ୍ମିକ ସଂସ୍କୃତି, ସାମାଜିକ ସଂହତି ଓ ଧାର୍ମିକ ପରମ୍ପରାର ଗୋଟିଏ ଗୋଟିଏ ତୀର୍ଥକ୍ଷେତ୍ର, ସାରସ୍ୱତ ପୀଠ ରୂପେ ପରିଚିତ ଏହି ଭାଗବତ ଘର ଥିଲା, ସମଗ୍ର ପଲ୍ଲୀର ପ୍ରାର୍ଥନା ଗୃହ । ଜାତି, ବର୍ଣ୍ଣ, ଧର୍ମ, ବୟସ, ଧନୀ, ନିର୍ଧନ ନିର୍ବିଶେଷରେ ନିଜ ମନରୁ ସକଳ ଭେଦ ବିଦ୍ୱେଷ ପରିହାର ପୂର୍ବକ ସମସ୍ତଙ୍କୁ ସମଭାବାପନ୍ନ କରି ଏକତାର ରଜ୍ଜୁରେ ଐକ୍ୟବଦ୍ଧ କରି ରଖିପାରିଥିଲା 'ଭାଗବତ ଟୁଙ୍ଗୀ' । ଭାଗବତ ଜନ୍ମ, ଭାଗବତ ସପ୍ତା, ଭାଗବତ ବଢ଼ା ଓ ଭାଗବତ ମେଳଣ ପ୍ରଭୃତି ନୈମିତ୍ତିକ କାର୍ଯ୍ୟକ୍ରମ ସମସ୍ତ ପଲ୍ଲୀବାସୀଙ୍କୁ ସ୍ନେହ, ସଂପ୍ରୀତି, ଏକତା ଓ ଭ୍ରାତୃତ୍ୱରେ ଉଦ୍ଦୀପିତ କରୁଥିଲା । ଗାଁର ସମସ୍ତ ସରଳ, ନିରୀହ ସର୍ବୋପରି ଶ୍ରମକ୍ଳାନ୍ତ ମଣିଷମାନଙ୍କର ଭାଗବତ ଘର ଥିଲା କୋଠଘର ଓ ସାନ୍ଧ୍ୟ ମିଳନସ୍ଥଳୀ, ଯେଉଁଠାରେ ସମସ୍ତଙ୍କର ଥିଲା ସମାନ ଅଧିକାର ଓ ସମାନ କର୍ତ୍ତବ୍ୟ । ଭାଗବତ ଘରୁ ଉଦ୍‌ଘୋଷିତ ଘଣ୍ଟଧ୍ୱନୀ ଆହ୍ୱାନ କରୁଥିଲା ଶ୍ରମଶ୍ରାନ୍ତ ମଣିଷମାନଙ୍କୁ ଐଶ୍ୱରିକ ପ୍ରଶାନ୍ତି ଆହରଣ କରିବାକୁ । ଗ୍ରାମ୍ୟ ଆଧ୍ୟାତ୍ମିକ ଓ ସାରସ୍ୱତ ଚେତନାର ଏହି ମହାନ ପୀଠ ପଲ୍ଲୀର ସୂଚନା କେନ୍ଦ୍ରରେ ପରିଣତ ହୋଇ ଯାଉଥିଲା ।

ସରଳ ଭାଷା, ତରଳ ଭାବ, ବିମଳ, ଭକ୍ତି ଓ ସହଜ ଧାରାରେ ଜଗନ୍ନାଥ ଦାସ ଶ୍ରୀମଦ୍ ଭାଗବତ ରଚନା କରି ସାକ୍ଷର ନିରକ୍ଷର ଆବାଳ ବୃଦ୍ଧ ବନିତା ସଭିଙ୍କ ହୃଦୟରେ ସାମାଜିକ ଚେତନାର ମଧୁର ମୂର୍ଚ୍ଛନା ସୃଷ୍ଟି କରିପାରିଥିଲେ । ଦୟା, ସେବା, ଦାନ, ତିତିକ୍ଷା ଓ ସତ୍‌କର୍ମର ବାର୍ତ୍ତା ପ୍ରଦାନ କରି ସେ ସ୍ୱର୍ଗୀୟ ସାମାଜିକ ଅନୁଚିନ୍ତାର ପ୍ରସାର କରିବା ସହିତ ଓଡ଼ିଆ ଜାତିର ଏକାନ୍ତ ଆପଣାର ହୋଇପାରିଥିଲେ । ଭାଗବତ ଟୁଙ୍ଗୀ ସମୂହ ନୈଶ ବିଦ୍ୟାଳୟର ଦାୟିତ୍ୱ ନିର୍ବାହ ପୂର୍ବକ ପ୍ରୌଢ଼ ଶିକ୍ଷାର ପ୍ରସାର କ୍ଷେତ୍ରରେ ବିଳକ୍ଷଣ ଭୂମିକା ଗ୍ରହଣ କରିଥିଲା । ସମାଜରୁ ଅଶିକ୍ଷା, ଅନ୍ଧକାର ବିଲୁପ୍ତ କରି ଓଡ଼ିଆ ଭାଷା ଶିକ୍ଷାର ପ୍ରସାର ନିମିତ୍ତ ଭାଗବତ ଘରଗୁଡ଼ିକ ଥିଲା ଦୀପ୍ୟମାନ ଆଲୋକବର୍ତ୍ତିକା । ଭାଗବତ ପାଠ କରିବା ଅଭିପ୍ରାୟରେ ପଲ୍ଲୀବାସୀ ସାକ୍ଷର ହେବାକୁ ଆଗ୍ରହୀ ହେଉଥିଲେ । ଜାତି, ସମ୍ପ୍ରଦାୟ ନିର୍ବିଶେଷରେ ଛାତ୍ରମାନଙ୍କ ମଧ୍ୟରେ ସାର୍ବଜନୀନ ଶିକ୍ଷା ପ୍ରସାରର ଏହା ଥିଲା ବିଦ୍ୟା ମନ୍ଦିର । ଏପରିକି ତତ୍କାଳୀନ ସମାଜରେ ଭାଗବତ ପାଠ ସର୍ବନିମ୍ନ ଶିକ୍ଷାଗତ ଯୋଗ୍ୟତା ଭାବରେ ସ୍ୱୀକୃତ ହେଉଥିଲା । ଜଗନ୍ନାଥ ଦାସ ଭାଗବତ ରଚନା କରି ଓଡ଼ିଶାବାସୀଙ୍କୁ ଶ୍ରଦ୍ଧାର ସହିତ ଓଡ଼ିଆ ଭାଷାରେ ଶିକ୍ଷିତ କରିବାକୁ ପ୍ରବର୍ତ୍ତାଇ ପାରିଥିଲେ । ଏପରିକି ସେ ଯୁଗର ଭାରତବର୍ଷରେ ଓଡ଼ିଶା ଥିଲା ସାକ୍ଷର ସଂଖ୍ୟାରେ ସର୍ବାଧିକ । ଭାଗବତ ରଚନାର ପରବର୍ତ୍ତୀ କାଳରେ ଓଡ଼ିଶାର ପୁରପଲ୍ଲୀରେ ଅସଂଖ୍ୟ ଚାଟଶାଳୀମାନ ଗଢ଼ି ଉଠିଲା ଏବଂ ସେଥିରେ ଭାଷା ଶିକ୍ଷା ପ୍ରଦାନ କରିବାକୁ ମାଟିବଂଶ ନାମକ ଏକ ଶିକ୍ଷକ ସମ୍ପ୍ରଦାୟ ଜନ୍ମ ନେଲା ।

ଶବ୍ଦ ବିଭବ, ଛନ୍ଦ ସାହିତ୍ୟ, ରୂପକଳ୍ପ ତଥା ଅସାଧାରଣ କାବ୍ୟ ଚାତୁରୀ ଦୃଷ୍ଟିରୁ ଜଗନ୍ନାଥ ଦାସଙ୍କ ଶ୍ରୀମଦ ଭାଗବତ ଭାରତୀୟ ସାହିତ୍ୟରେ ବିରଳ । ବେଦ, ଉପନିଷଦର ଦୁର୍ବୋଧ୍ୟ ଦାର୍ଶନିକ ତତ୍ତ୍ୱଗୁଡ଼ିକୁ ସରଳ ଭାଷା ଲାଳିତ୍ୟ ଓ ଚମତ୍କାର ଶବ୍ଦ ସଂଯୋଜନା ମାଧ୍ୟମରେ ଭାଗବତ କେବଳ ସୁଖପାଠ୍ୟ ନୁହେଁ ପରନ୍ତୁ ଜ୍ଞାନ ପିପାସୁମାନଙ୍କ ପାଇଁ ଭଗବତ କରୁଣା ପ୍ରାପ୍ତିର ଏକ ସୁଲଭ ମାର୍ଗ ଭାବେ ବିବେଚିତ ହୁଏ । ଦାସ ଗୋସାଇଁଙ୍କ

ଲେଖନୀରୁ ଯେଉଁ ଭାଷା ନିସୃତ ହେଉଥିଲା, ତାହା ଥିଲା ଓଡ଼ିଶାର ସାଧାରଣ ଜନତାଙ୍କର ଭାଷା ଓ ମାନକ ଭାଷା । ଖ୍ରୀଷ୍ଟିୟ ଷୋଡ଼ଶ ଶତାବ୍ଦୀବେଳକୁ ଓଡିଆ ଭାଷା ଉପରେ ସଂସ୍କୃତ ଭାଷାର ଦୁର୍ନିର୍ବାର ପ୍ରଚଣ୍ଡ ପ୍ରଭାବ ବିସ୍ତାର ହୋଇସାରିଥିଲା । କ୍ରମଶଃ ଯାବନିକ ଶବ୍ଦ ସମୂହ ମଧ୍ୟ ପ୍ରବେଶ କରି ଓଡ଼ିଆ ଭାଷାର ମୌଳିକତାକୁ କ୍ଷୁଣ୍ଣ କରୁଥିଲା । ଏହି ସଙ୍କଟାପନ୍ନ କ୍ଷଣରେ ଜଗନ୍ନାଥ ଦାସ ଭାଷାର ବ୍ୟବହାର କ୍ଷେତ୍ରରେ ଯେଉଁ ଅଭୂତପୂର୍ବ କ୍ରାନ୍ତିକାରୀ ପ୍ରୟାସ କରିଛନ୍ତି, ତାହା ଅତୁଳନୀୟ । ତାହା ହୋଇ ନଥିଲେ ସାରଳା ଦାସଙ୍କ ମହାଭାରତ, ଚଣ୍ଡୀପୁରାଣ, ବିଲଙ୍କା ରମାୟଣ ଓ ବଳରାମ ଦାସଙ୍କ ରଚିତ ଦାଣ୍ଡି ରାମାୟଣ ପ୍ରଭୃତି ଗ୍ରନ୍ଥରେ ଯେଉଁ ଭାଷାର ସୂତ୍ରପାତ ହେଉଥିଲା, ତାହା ଅବ୍ୟାହତ ରହିଥାନ୍ତା ଓ ଓଡ଼ିଆ ଭାଷା ସମ୍ବଲପୁରୀ 'ବିଭାଷା' ପରି ଅନ୍ୟ ଏକ ଉପଭାଷା ଭାବରେ କେବଳ ଉପକୂଳବର୍ତ୍ତୀ ଅଞ୍ଚଳରେ ବଞ୍ଚି ରହିଥାନ୍ତା । ଜଗନ୍ନାଥ ଦାସଙ୍କ ଭାଗବତରେ ଓଡ଼ିଆ ଭାଷାର ଶୁଦ୍ଧତା, ଶାଳୀନତା, ସୌନ୍ଦର୍ଯ୍ୟ, ମାଧୁର୍ଯ୍ୟ ଓ ଗାମ୍ଭୀର୍ଯ୍ୟ ଅତୁଳନୀୟ । ପ୍ରାକୃତ ଓଡ଼ିଆ ଶବ୍ଦ ସମ୍ଭାର ସହିତ ସରଳ ସଂସ୍କୃତର ଅପୂର୍ବ ସମନ୍ୱୟରେ ଭାଗବତର ଭାଷା ହୋଇଛି ସରଳ, ମଧୁର, ଚିତ୍ତାକର୍ଷକ ଓ ହୃଦୟଗ୍ରାହୀ । ସଂସ୍କୃତ ମୂଳ ଶବ୍ଦ, ତତ୍ସମ ଏବଂ ତଦ୍ଭବ ଶବ୍ଦ ସମୂହର ସମାହାର ସହିତ ଶୁଦ୍ଧ ଓଡ଼ିଆ ଶବ୍ଦମାନଙ୍କର ପ୍ରୟୋଗ କୌଶଳରେ ଜଗନ୍ନାଥ ଦାସଙ୍କ ଦକ୍ଷତା ତାଙ୍କ ନିପୁଣ କବିତ୍ୱର ପ୍ରମାଣ ଦିଏ । ସାରଳା ଦାସ ଓ ବଳରାମ ଦାସ ଗାଉଁଲି ଭାଷାରେ ତାଙ୍କର ରଚନାବଳୀ ସର୍ଜନା କରିଥିବା ବେଳେ ଓଡ଼ିଆ ଭାଷାର ବିକାଶ ସ୍ରୋତ ଜଗନ୍ନାଥ ଦାସଙ୍କ ବୈପ୍ଳବିକ ପ୍ରଚେଷ୍ଟାରେ ଋଦ୍ଧିମନ୍ତ ହୋଇଥିଲା । ଆଦି କବି ସାରଳା ଦାସଙ୍କ ମହାଭାରତ ଦାଣ୍ଡିବୃତ୍ତରେ ରଚିତ, ଯାହା ବନ୍ୟା ପ୍ଳାବିନି ପ୍ରଖର ସ୍ରୋତା ଭଳି କେଉଁଠି ନବାକ୍ଷରୀ ତ କେଉଁଠି ଚତୁର୍ଦ୍ଦଶାକ୍ଷରୀ ଅଥବା ପଞ୍ଚଦଶାକ୍ଷରୀ । ମାତ୍ର ଜଗନ୍ନାଥ ଦାସଙ୍କ ଭାଗବତ ଏକ ନିର୍ମଳ ଶାରଦୀୟ କୁଳୁକୁଳୁ ନାଦିନୀ ସ୍ରୋତସ୍ୱନୀ ନବାକ୍ଷରୀ ବୃତ୍ତରେ ଏକ ଛନ୍ଦୋବଦ୍ଧ ମହାକାବ୍ୟ । ଉପମା ଓ ଉତ୍‌ପ୍ରେକ୍ଷା ଅଳଙ୍କାର ପ୍ରୟୋଗରେ ଭାଗବତ ସୌଷ୍ଠବ ବେଶ୍ ସମୃଦ୍ଧ । ଉପମା ଓ ଉପମେୟ ବିନ୍ୟାସ ପୂର୍ବକ ହୃଦୟଗ୍ରାହୀ ରୂପକଳ୍ପନା ମଧ୍ୟ ଜଗନ୍ନାଥ ଦାସଙ୍କ ଭାଗବତର ଅନନ୍ୟ ବୈଚିତ୍ର୍ୟ । ଅର୍ଥାନ୍ତର, ନ୍ୟାସ, ରୂପକ, ସ୍ୱଭାବୋକ୍ତି ଓ ଦୃଷ୍ଟାନ୍ତ ଅଳଙ୍କାର ପ୍ରୟୋଗ ଶ୍ରୀମଦ୍ ଭାଗବତକୁ ପୂର୍ଣ୍ଣତା ପ୍ରଦାନ କରିଛି । ଓଡ଼ିଆ ଭାଷା କ୍ଷେତ୍ରକୁ ଜଗନ୍ନାଥ ଦାସଙ୍କ ମହାର୍ଘ ଅବଦାନ ହେଉଛି, 'ଶ୍ରୀମଦ୍ ଭାଗବତ' ମାଧ୍ୟମରେ ଓଡ଼ିଆ ବର୍ଣ୍ଣମାଳାର ପରିପ୍ରକାଶ । ସେ ଉଲ୍ଲେଖ କରିଛନ୍ତି :

'ତ୍ରୟସ୍ୱରୂପୀ ବ୍ରହ୍ମ ଜ୍ୟୋତି । ବ୍ରହ୍ମ ପ୍ରକାଶ ହୋଇଛନ୍ତି ।
ଏକାକ୍ଷର ବ୍ରହ୍ମ ପ୍ରଣବ । ଶବଦ ରୂପୀ ବୀଜ ସର୍ବ ।
ତାହାଙ୍କ ତହୁଁ ଉତପନ୍ନ । ଚଉଦ ଆକାରାଦି ବର୍ଣ୍ଣ ।
ଚଉଦ ସ୍ୱର ଏ ବୋଲାନ୍ତି । ଏ ଭାବେ ଅକ୍ଷରର ଗତି ।
କ କାର ଆଦି ଚଉତିଶ । ବ୍ୟଞ୍ଜନ ଶବଦ ବିଶେଷ ।
ସ୍ୱରମାନେ ଯେ ଦୀର୍ଘ ହ୍ରସ । ପ୍ଳୁତ ନାମରେ ପରକାଶ ।
ସନ୍ଧି ଅକ୍ଷର ଏ ବୋଲାଇ । ଏ କାର ଆଦି ଚାରି ସେହି ।
ପଚିଶ ବର୍ଣ୍ଣେ ପଞ୍ଚ ପଞ୍ଚ । ପାଞ୍ଚ ବର୍ଣ୍ଣରେ ବର୍ଗ ସଞ୍ଚ ।
ଏ ଅନ୍ତେ ଅନ୍ତଃସ୍ଥ ଏ ଜାଣ । ଯ ର ଳ ବ ଏ ଚାରିବର୍ଣ୍ଣ ।
ଶ ଷ ସ ହ ଏ ଚାରିବର୍ଣ୍ଣ । ଉଷ୍ମବର୍ଣ୍ଣ ବୋଲିଣ ଜାଣ ।
ବିନ୍ଦୁନୁସ୍ୱାର ଏ ବୋଲାଇ । ସେସବୁ ବିନ୍ଦୁ ଦୁଇ ହୋଇ ।
ବିସର୍ଗ ନାମ ଯେ ବୋଲାଇ । ଗଜ ଶଣ୍ଢାକୃତି ସେ ହୋଇ ।
ଏମନ୍ତ ହୋଇ ଶବ୍ଦ ବ୍ରହ୍ମ । ପଞ୍ଚାଶ ବର୍ଣ୍ଣ ଭେଦ ନାମ ।

କୃଷ୍ଣ ଦ୍ୱୈପାୟନ ବେଦବ୍ୟାସ କୃତ ସଂସ୍କୃତ ଭାଗବତ ଆଧାରରେ ଜଗନ୍ନାଥ ଦାସ ଓଡ଼ିଆ ଭାଗବତ ରଚନା କରିଥିଲେ ମଧ୍ୟ ଏହା ଆକ୍ଷରିକ ଅନୁବାଦ ନୁହେଁ । ଏଥିରେ ସନ୍ଥ କବି ଜଗନ୍ନାଥ ଦାସ କୃଷ୍ଣ ଚେତନାର ଏକ ସାମଗ୍ରିକ ଅଭିବ୍ୟକ୍ତି ଓ କୃଷ୍ଣ ଲୀଳାର ରସାପ୍ଳୁତ ବର୍ଣ୍ଣନା ସହିତ ସ୍ୱଦେଶ ପ୍ରୀତି, ନୈତିକ ଓ ମାନବୀୟ ମୂଲ୍ୟବୋଧର ପ୍ରସାର କ୍ଷେତ୍ରରେ ଏକ ନବ ଦିଗନ୍ତ ଉନ୍ମୋଚନ କରିଥିଲେ । ସମସ୍ତଙ୍କ ଜୀବନରେ କୌଣସି ମୁହୂର୍ତ୍ତରେ ଏପରି ଦୁର୍ଦ୍ଦିନ ଆସେ ଯେତେବେଳେ ଜୀବନ ଖୁବ୍ ଅସହାୟ ହୋଇପଡ଼େ । ସେହି ନିଃସହାୟ ଆର୍ତ୍ତ ମଣିଷକୁ ମୁକ୍ତିର ମାର୍ଗ ପ୍ରଦର୍ଶନ ନିମିତ୍ତ ଜଗନ୍ନାଥ ଦାସ ସୃଷ୍ଟି କରିଛନ୍ତି, ମୃଗୁଣୀ ସ୍ତୁତି, ଯାହା ମୂଳ ଭାଗବତରେ ପରିଦୃଷ୍ଟ ହୁଏ ନାହିଁ । ଏହିପରି ଅନେକ ଆଖ୍ୟାୟିକା ମାଧ୍ୟମରେ ଜୀବନ ଦର୍ଶନକୁ ବୁଝାଇ କବି ଓଡ଼ିଆ ଭାଗବତର ସ୍ୱାତନ୍ତ୍ର୍ୟତାକୁ ପରିସ୍ଫୁଟ କରିଛନ୍ତି । ଆଖ୍ୟାୟିକାର ଅବତାରଣା କରି ଜନସମାଜକୁ ଦିଗ୍‌ଦର୍ଶନ

ଦେବା ସହିତ ଆଦିମ ମଣିଷର ଜାନ୍ତବ ପ୍ରବୃତ୍ତିକୁ ମାନବୀୟ ଚିନ୍ତାଧାରାରେ ପରିବର୍ତ୍ତନ କରିବା ଦିଗରେ ଧର୍ମଶାସ୍ତ୍ରର କଠୋର ଦର୍ଶନ ଅପେକ୍ଷା ଆଖ୍ୟାୟିକା ଅଧିକ ଗ୍ରହଣଯୋଗ୍ୟ ହୋଇପାରିବ ବୋଲି ସେ ଉପଲବ୍ଧି କରିଥିଲେ । ବିବିଧ ନୀତିବାଣୀ, ଲୋକୋକ୍ତି, ସଦୁକ୍ତି ଆଦିର ଅନବଦ୍ୟ ଅମୂଲ୍ୟ ଭଣ୍ଡାର ହେଉଛି, 'ଶ୍ରୀମଦ୍ ଭାଗବତ' । ଅତ୍ୟନ୍ତ ଉପାଦେୟ ଶତ ଶତ ସଦୁକ୍ତିର ସମ୍ଭାର ମାଧ୍ୟମରେ ସାମ୍ପ୍ରତିକ କାଳରେ ମଧ୍ୟ ଦାସେ ଗୋସାଇଁ ଓଡ଼ିଶାର ସମାଜକୁ ଦିଗ୍‌ଦର୍ଶନ ଦେବାରେ ସକ୍ଷମ ହୁଅନ୍ତି । ପରମଶାସ୍ତ୍ର ଭାଗବତର ପ୍ରାରମ୍ଭରେ ଭଗବାନ ନୃସିଂହଙ୍କର ପଦବନ୍ଦନା କରି ଓଡ଼ିଆ ଭାଗବତର ସ୍ୱାତନ୍ତ୍ର୍ୟତା ଓ ବୈପ୍ଲବିକ ଚେତନାର ସେ ଆଭାସ ଦେଇଛନ୍ତି ।

ଦ୍ୱାଦଶ ଶତାବ୍ଦୀରେ ସୃଷ୍ଟ ବୈଷ୍ଣବ ଧର୍ମର ବିକାଶକାଳ ଥିଲା ଷୋଡ଼ଶ ଶତାବ୍ଦୀ । ଏହି ସମୟରେ ବଙ୍ଗରୁ ଶ୍ରୀଚୈତନ୍ୟ ଦେବଙ୍କ ପୁରୁଷୋତ୍ତମ କ୍ଷେତ୍ରକୁ ଆଗମନ ଯୋଗୁଁ ବୈଷ୍ଣବ ଧର୍ମର ଚରମ ଉତ୍କର୍ଷତା ପରିଲକ୍ଷିତ ହୁଏ ଏହି ଯୁଗରେ । ମାତ୍ର ଶ୍ରୀଚୈତନ୍ୟଙ୍କ ଗୌଡ଼ିୟ ବୈଷ୍ଣବ ଧର୍ମୀୟ ବିଚାରଠାରୁ ଶ୍ରୀଜଗନ୍ନାଥ ଦାସଙ୍କ ଉତ୍କଳୀୟ ବୈଷ୍ଣବ ଧର୍ମୀୟ ବିଚାର ଭିନ୍ନ ଥିଲା । ଏପରିକି ଜଗନ୍ନାଥ ଦାସଙ୍କ ଯୋଗାଶ୍ରିତ ଜ୍ଞାନ ଓ ଭକ୍ତି ଭାବନାରେ ଶ୍ରୀଚୈତନ୍ୟ ବିମୋହିତ ହୋଇ ତାଙ୍କୁ 'ଅତିବଡ଼ୀ' ରୂପେ ସ୍ୱୀକାର କରିଥିଲେ । ଓଡ଼ିଶାର ଇଷ୍ଟ ଦେବତା ଶ୍ରୀଜଗନ୍ନାଥଙ୍କ ମନ୍ଦିରଠାରୁ ଆରମ୍ଭ କରି ସମଗ୍ର ଓଡ଼ିଶାର ମଠ, ମନ୍ଦିର ଓ ଭାଗବତ ଟୁଙ୍ଗୀମାନଙ୍କରେ ଭାଗବତ ଗାଦି ରହିବା ସହିତ ଭାଗବତ ପାଠ ଉତ୍କଳୀୟ ଧର୍ମୀୟ ପରମ୍ପରାର ଏକ ଅଙ୍ଗ ହୋଇଗଲା ।

ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ପରି ଅତିବଡ଼ୀ ଜଗନ୍ନାଥଙ୍କ ଶ୍ରୀମଦ୍ ଭାଗବତ ଓଡ଼ିଆ ଜାତିର ପ୍ରାଣ- ସର୍ବୋତ୍କୃଷ୍ଟ ବାଞ୍ଛିତ ପ୍ରିୟତମ କାବ୍ୟ । ସେଥିଯୋଗୁଁ ପାଞ୍ଚଶହ ବର୍ଷ ଅତିକ୍ରାନ୍ତ ପରେ ମଧ୍ୟ ଏବେ ବି ଭାଗବତ ସ୍ୱୟଂ ଈଶ୍ୱରଙ୍କ ଅବତାର ସ୍ୱରୂପ ଭାବରେ ପ୍ରତି ଓଡ଼ିଆର ଗୃହରେ ପୂଜିତ । ସମ୍ପ୍ରତି ମଧ୍ୟ ମେଦିନିପୁର, ବିଶାଖାପାଟଣା, ସିଂହଭୂମ, ଖରସୁଆଁ ପ୍ରଭୃତି ଓଡ଼ିଆ ଅଧ୍ୟୁଷିତ ବିଛିନ୍ନାଞ୍ଚଳରେ ଏହି ମହାନ ଗ୍ରନ୍ଥର ଲୋକପ୍ରିୟତା ଆଦୃତ । ଭାଗବତ ଟୁଙ୍ଗୀ ଥିଲା ଏକାଧାରରେ ସଂକୀର୍ତ୍ତନ, ସଂଗୀତ, ଭାଷାଶିକ୍ଷା ଗୃହ, ଦୈହିକ ଓ ମାନସିକ ଶକ୍ତି ଅର୍ଜନର ଏକ ସମନ୍ୱୟ କ୍ଷେତ୍ର । ମାତ୍ର ବିଡ଼ମ୍ବନାର ବିଷୟ, କବୀର, ତୁଳସୀ ଦାସ, ସୁର ଦାସ, ମୀରାବାଇ, ରାମଦାସ, ତୁକାରାମ ପ୍ରଭୃତିଙ୍କ ପରି ଜଗନ୍ନାଥ ଦାସ ଜଣେ ଯଶସ୍ୱୀ ସନ୍ଥ କବି ହୋଇଥିଲେ ମଧ୍ୟ ଉଲ୍ଲିଖିତ ସମସ୍ତ କବିମାନଙ୍କ ପରି ସର୍ବ ଭାରତୀୟ ସ୍ତରରେ ମର୍ଯ୍ୟାଦାପୂର୍ଣ୍ଣ ଆସନରୁ ବଞ୍ଚିତ ହୁଅନ୍ତି । ଏହି ଦିଗରେ ଆନ୍ତରିକ ପ୍ରଚେଷ୍ଟା ସର୍ବାଦୌ ବାଞ୍ଛନୀୟ ।

ଅଧ୍ୟକ୍ଷ
ଆନନ୍ଦପୁର ମହାବିଦ୍ୟାଳୟ, ଆନନ୍ଦପୁର, କେନ୍ଦୁଝର



# ମହାକବି କାଳିଦାସଙ୍କ ପାଣ୍ଡିତ୍ୟ ଓ କବିତ୍ୱ

ସୁଚିତ୍ରା ବେହେରା

ସଂସ୍କୃତ କାବ୍ୟ ସାହିତ୍ୟର ପ୍ରବାଦ ପୁରୁଷ ହେଉଛନ୍ତି ମହାକବି କାଳିଦାସ । ତାଙ୍କର ଜନ୍ମ ଓ ଜୀବନୀ ସହ ନାନା କିମ୍ବଦନ୍ତୀ ସମ୍ପୃକ୍ତ । କିମ୍ବଦନ୍ତୀ ଅନୁସାରେ ସେ ଏକ ବିଦୂଷୀ ନାରୀଙ୍କୁ ବିବାହ କରି ପାଣ୍ଡିତ୍ୟ ଅର୍ଜନ କରିଥିଲେ ।

ସଦାନନ୍ଦ ନାମକ ଜଣେ ରାଜାଙ୍କର ଗୁଣୀ କନ୍ୟା ଶାସ୍ତ୍ରବିତ୍ ବିଦ୍ୟୋତ୍ତମା ନିଜର ବିବାହ ପାଇଁ ସର୍ତ୍ତ ରଖିଥିଲେ ଯେ, ଯିଏ ତାଙ୍କୁ ବିଦ୍ୟା, ବୁଦ୍ଧି ଓ ଶାସ୍ତ୍ର ଜ୍ଞାନରେ ପରାସ୍ତ କରିବେ, ସେ ହିଁ ତାଙ୍କର ସ୍ୱାମୀ ହେବେ । ପରିଣତିରେ ଅନେକ ପଣ୍ଡିତ ତାଙ୍କ ଦ୍ୱାରା ଶାସ୍ତ୍ରରେ ପରାସ୍ତ ହେଲେ ଓ ଅପମାନିତ ବୋଧ କଲେ । ଏଥିରେ ପଣ୍ଡିତମାନେ କ୍ଷୁବ୍ଧ ହେଲେ । ବିଦ୍ୟୋତ୍ତମାଙ୍କୁ ଉପଯୁକ୍ତ ଶାସ୍ତି ଦେବା ପାଇଁ ସେମାନେ ଚିନ୍ତା କରି ବାଟରେ ଯାଉଥିବାବେଳେ ଦେଖିଲେ ଜଣେ ମେଣ୍ଢା ଜଗୁଆଳି ଯୁବକ ଯେଉଁ ଗଛ ଡ଼ାଳରେ ବସିଛି, ସେଇ ଡ଼ାଳକୁ କୁରାଢୀରେ ହାଣୁଛି । ପଣ୍ଡିତମାନେ ତାକୁ ଜଗତର ସର୍ବାଧିକ ମୂର୍ଖ ବିଚାରି ପାଖକୁ ଡ଼ାକିଲେ । ତାକୁ କହିଲେ ତା'ର ବିବାହ ଗୋଟାଏ ସୁନ୍ଦରୀ ଝିଅ ସହିତ କରାଇଦେବେ । ତାକୁ ସେମାନେ ପରାମର୍ଶ ଦେଲେ ଯେ, ଝିଅଟି ଯାହା ପଚାରିବ ସେ କିଛି ନ କହି କେବଳ ନିରବ ରହିବ ଓ ଆଙ୍ଗୁଳି ଠାରରେ ଉତ୍ତର ଦେବେ । ପଣ୍ଡିତମାନେ ମେଣ୍ଢା ପାଳକ ମୂର୍ଖ କାଳିଦାସଙ୍କୁ ପଣ୍ଡିତ ବେଶ କରି ରାଜଦରବାରକୁ ନେଇଗଲେ ।

ରାଜା ଓ ରାଜକନ୍ୟାଙ୍କୁ ସେମାନେ କହିଲେ- ପଣ୍ଡିତ ଜଣକ ବିଶିଷ୍ଟ ସାଧକ ଓ ସେ ମୌନବ୍ରତ ପାଳନ କରିଛନ୍ତି । ତେଣୁ ସେ ସଂକେତରେ ସେ ଉତ୍ତର ଦେବେ । ରାଜକନ୍ୟା ଏଥିରେ ସମ୍ମତ ହୋଇ ସଂକେତରେ ପ୍ରଶ୍ନ କଲେ । ପ୍ରଥମେ ସେ ଗୋଟିଏ ଆଙ୍ଗୁଳି ଦେଖାଇଲେ, ଯାହାର ଅଭିପ୍ରାୟ ଥିଲା 'ବ୍ରହ୍ମ ଏକ' । ମୂର୍ଖ କାଳିଦାସ ଭାବିଲେ ରାଜକନ୍ୟା ତାଙ୍କୁ ଗୋଟିଏ ଆଙ୍ଗୁଠି ଦେଖାଇ ଆଖି ଫୁଟାଇ ଦେବ ବୋଲି କହୁଛି । ଏଥିରେ ସେ କ୍ଷୁବଧ୍ ହୋଇ ରାଜଜେମାଙ୍କୁ ଦୁଇଟି ଆଙ୍ଗୁଠି ଦେଖାଇଲେ । ରାଜଜେମା ଭାବିଲେ ପଣ୍ଡିତ ସୂଚାଇବାକୁ ଚାହୁଛନ୍ତି, ଆତ୍ମା ଏକ ନୁହେଁ, ଏହା ଦୁଇ ପ୍ରକାର, ଯଥା- ଜୀବାତ୍ମା ଓ ପରମାତ୍ମା । ରାଜକୁମାରୀ ପଣ୍ଡିତବେଶୀ ମୂର୍ଖ କାଳିଦାସଙ୍କ ସାଂକେତିକ ଜ୍ଞାନରେ ମୋହିତ ହୋଇ ତାଙ୍କୁ ବିବାହ କଲେ ।

ମାତ୍ର କାଳିଦାସଙ୍କ ମୂର୍ଖତା ଦିନେ ରାଜକନ୍ୟାଙ୍କ ନିକଟରେ ଧରା ପଡ଼ିଗଲା । ସ୍ୱାମୀ ସହ ବିଦ୍ୟୋତ୍ତମା ଘରେ ଥିବାବେଳେ ବାଟରେ ଓଟଟିଏ ଚିତ୍କାର କଲା । ବିଦ୍ୟୋତ୍ତମା କାଳିଦାସଙ୍କୁ ପ୍ରଶ୍ନ କଲେ- 'କଃ ଶବ୍ଦାୟତେ' ଅର୍ଥାତ୍ କିଏ ଶବ୍ଦ କରୁଛି ? କାଳିଦାସ ଉଷ୍ଟ୍ରଶଙ୍ଗ ଉଚ୍ଚାରଣ କରିନପାରି ଉଟ୍ରଃ ବୋଲି କହିଦେଲେ । ବିଦ୍ୟୋତ୍ତମାଙ୍କ ପାଇଁ ସ୍ୱାମୀଙ୍କ ମୂର୍ଖାମୀ ଓ ପରାଜିତ ପଣ୍ଡିତମାନଙ୍କର କୌଶଳକୁ ବୁଝିବାକୁ ଆଉ କିଛି ବାକି ନଥିଲା । ଫଳରେ କାଳିଦାସଙ୍କ ସ୍ୱାମୀତ୍ୱକୁ ଅସ୍ୱୀକାର କରି କହିଲେ, ତମେ ଯେ ପର୍ଯନ୍ତ ପଣ୍ଡିତ ନ ହୋଇଛ ସେ ପର୍ଯ୍ୟନ୍ତ ମୁଁ ତୁମକୁ ସ୍ୱାମୀରୂପେ ଗ୍ରହଣ କରିପାରିବି ନାହିଁ ।

ଏହାପରେ କାଳିଦାସ ଗୃହତ୍ୟାଗ କଲେ । ତାଙ୍କର ପରବର୍ତ୍ତୀ ଜୀବନରେ ସେ ସରସ୍ୱତୀଙ୍କର କୃପା ଭାଜନ ହୋଇ ପାଣ୍ଡିତ୍ୟ ଓ କବିତ୍ୱ ଅର୍ଜନ କଲେ । ବିଦ୍ୟାଲାଭ ପରେ ସେ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କଲେ ଓ ବନ୍ଦ ଥିବା କବାଟରେ ଆଘାତ କରି କହିଲେ-

ଅନାବୃତ କପାଟଂ ଦ୍ୱାରଂ ଦେହି ଅର୍ଥାତ୍ ଦ୍ୱାର ଦେଶ ଉନ୍ମୁକ୍ତ କର । ଏତକ ଶୁଣି ବିଦୂଷୀ ବିଦ୍ୟୋତ୍ତମା କହିଲେ– ଅସ୍ତି କଶ୍ଚିଦ୍ ବାକ୍ ବିଶେଷଃ ଅର୍ଥାତ୍ କ'ଣ କିଛି କହିବାର ଅଛି ? ଏତକ ଶୁଣି କାଳିଦାସ ଅଭିଭୂତ ହୋଇପଡ଼ିଲେ । ପତ୍ନୀଙ୍କର ଏହି ଶବ୍ଦକୁ ନେଇ ସେ କାବ୍ୟ ରଚନା କଲେ । ବିଦ୍ୟୋତ୍ତମା ସ୍ୱାମୀଙ୍କର କାବ୍ୟ ରଚନାଗୁଡ଼ିକ ସମ୍ବନ୍ଧରେ ଜ୍ଞାତ ହୋଇ ସ୍ୱାମୀଙ୍କୁ ବିଦ୍ୱାନ ମନେ କଲେ । କାଳିଦାସ ମଧ୍ୟ ପତ୍ନୀଙ୍କଠାରୁ ସମଦୃରତା ଲାଭ କଲେ ବୋଲି ଜନଶ୍ରୁତି ରହିଛି ।

ମାତ୍ର ଐତିହାସିକ ମତ ଅନୁସାରେ, କାଳିଦାସ ରାଜା ବିକ୍ରମାଦିତ୍ୟଙ୍କ ସଭା ପଣ୍ଡିତ ବୋଲି ଅନୁମାନ କରାଯାଏ । ତାଙ୍କର ଜନ୍ମ ସମୟ ଓ ସ୍ଥାନର କୌଣସି ନିର୍ଦ୍ଦିଷ୍ଟ ତଥ୍ୟ ନଥିଲେ ହେଁ ଆନୁମାନିକ ଦୃଷ୍ଟିକୋଣରୁ ଖ୍ରୀ:ପୂ: ୨ୟ ଶତାବ୍ଦୀରୁ ଖ୍ରୀ:ଅ ୬ଷ୍ଠ ଶତାବ୍ଦୀ ପର୍ଯ୍ୟନ୍ତ ସମୟ ସୀମା ମଧ୍ୟରେ ତାଙ୍କର ଜନ୍ମ ହୋଇଥିବା କଥା ପ୍ରକାଶ ହୋଇଛି । ଏହା ବ୍ୟତୀତ କାଳିଦାସ ଉତ୍ତର ଭାରତର ବ୍ୟକ୍ତି ଥିଲେ ବୋଲି ସ୍ୱୀକାର କରାଯାଏ ।

ଜଣେ କମ୍ବଦନ୍ତୀ ପୁରୁଷ ଅବା ଜନଶ୍ରୁତିର ନାୟକ ହେଲେ ମଧ୍ୟ କାଳିଦାସଙ୍କ କବିତ୍ୱରେ ଲାଳିତ୍ୟ ଅଛି, ମଧୁର ପଦ ସଂଯୋଜନା ଅଛି, କାବ୍ୟିକ ଆବେଗ ଅଛି । ଭାଷା ପ୍ରୟୋଗରେ ଅଛି ତାଙ୍କର ସାବଲୀଳତା । ତାଙ୍କର ଭାଷା ପ୍ରୟୋଗ ଅମୃତରେ ସିକ୍ତ, ଜ୍ୟୋତ୍ସ୍ନାରେ ବିଧୌତ ଓ ମାଧୁର୍ଯ୍ୟରେ ରସାଣିତ । ତେଣୁ ଭୂମିରୁ ଭୂମା ଆଡ଼କୁ ଉର୍ଦ୍ଧ୍ୱୟିତ ତାଙ୍କର କବିତ୍ୱ ଶକ୍ତି । ଜନଶ୍ରୁତିରୁ ଜଣାଯାଏ ଯେ, ପତ୍ନୀ ବିଦ୍ୟୋତ୍ତମାଙ୍କର ଉଚ୍ଚାରିତ 'ଅସ୍ତି', 'କଶ୍ଚିଦ୍' ଓ 'ବାକ୍' ତିନୋଟି ଶବ୍ଦ 'କୁମାର ସମ୍ଭବ', 'ମେଘଦୂତମ୍' ଓ 'ରଘୁବଂଶ'ପରି ତିନୋଟି କାବ୍ୟ ରଚନା ପାଇଁ ସର୍ବାଧିକ ପ୍ରେରଣା ଦେଇଥିଲା ।

'କଶ୍ଚିଦ୍' ପଦକୁ ନେଇ ସେ ରଚନା ଆରମ୍ଭ କରିଥିଲେ 'ମେଘଦୂତମ୍' କାବ୍ୟ ଯଥା–

'କଶ୍ଚିତ୍‌କାନ୍ତା' ବିରହଗୁରୁଣା ସ୍ୱାଧିକ ରାତ୍ ପ୍ରମତ୍ତଃ

ଶାପେନାସ୍ତଂ ଗମିତମହିମା ବର୍ଷଭୋଗ୍ୟେଣ ଭର୍ତ୍ତୁଃନ୍ତ ।

'ଅସ୍ତି' ପଦରେ 'କୁମାରସମ୍ଭବ' ମହାକାବ୍ୟ ରଚନା କରିଥିଲେ–

'ଅସ୍ତ୍ୟୁତ୍ତରସ୍ୟାଂ ଦିଶି ଦେବତାତ୍ମା
ହିମାଳୟୋ ନାମ ନାଗାଧିରାଜଃ
ପୂର୍ବାପରୌ ତୋୟନିଧି ବଗାହ୍ୟ
ସ୍ଥିତଃ ପୃଥିବ୍ୟା ଇବ ମାନଦଣ୍ଡଃ' ।

ସେହିପରି 'ବାକ୍' ପଦରେ 'ରଘୁବଂଶ' ମହାକାବ୍ୟର ଅୟମାରମ୍ଭ କରିଥିଲେ–

'ବାଗାର୍ଥବିବ ସଂପୃକ୍ତୌ ବାଗର୍ଥ ପ୍ରତିପତ୍ତୟେ
ଜଗତଃ ପିତରୌ ବନ୍ଦେ ପାର୍ବତୀ ପରମେଶ୍ୱରୌ' ।

କାଳିଦାସଙ୍କ କବିତ୍ୱର ପଟ୍ଟାନ୍ତର ନାହିଁ । ସେ ମହାକବି । ତାଙ୍କର କବିତ୍ୱ, ସ୍ୱର୍ଦ୍ଧିତ ବ୍ୟକ୍ତିତ୍ୱପୂର୍ଣ୍ଣ । ଗୀତିକାବ୍ୟ 'ଋତୁ ସଂହାରମ୍', ଦୃଶ୍ୟକାବ୍ୟ ବା ନାଟକ ମଧ୍ୟରେ 'ଅଭିଜ୍ଞାନ ଶାକୁନ୍ତଳମ୍', 'ମାଳବିକାଗ୍ନିମିତ୍ରମ୍', 'ବିକ୍ରମୋର୍ବଶୀୟମ୍' ଆଦି ତାଙ୍କର ଶ୍ରେଷ୍ଠ ରଚନା । ତାଙ୍କର ଅନନ୍ୟ ପ୍ରତିଭା ତାଙ୍କୁ ବିଶ୍ୱକବିର ମାନ୍ୟତା ପ୍ରଦାନ କରିଛି ।

କାଳିଦାସଙ୍କ କବିତ୍ୱ ଚିର ଅମଳିନ । କାବ୍ୟ ରଚନାରେ ତାଙ୍କର ଅଗାଧ ପାଣ୍ଡିତ୍ୟ ବିଶ୍ୱସାହିତ୍ୟ ଦରବାରରେ ତାଙ୍କୁ ସାଧାରଣରୁ ଅସାଧାରଣ ବ୍ୟକ୍ତିତ୍ୱ ପ୍ରଦାନ କରିଛି । ତେଣୁ ବାସ୍ତବରେ କାଳିଦାସ ନିଜ ଗୁଣରେ କବି କୁଳର ଗୁରୁ । ସେ ମହାକାବ୍ୟ ରଚନା କରି ସଂସ୍କୃତ ସାହିତ୍ୟର ମହାକବି ରୂପେ ବିଶ୍ୱବିଦିତ ।

ପ୍ଲଟ ନଂ–୧୩୬/୮୫୦
ବ୍ରହ୍ମେଶ୍ୱର ପାଟଣା, ଭୁବନେଶ୍ୱର–୧୮



# ସ୍ମୃତିରେ ସ୍ମୃତିରେ ରାଧାମୋହନ ଗଡ଼ନାୟକ

**ବିମଳା ସିଂହ**

''କବି ହେବା ପାଇଁ ବାସନା ମୋର
ପ୍ରବଳ ଭାରିରେ ପ୍ରବଳ ଭାରି ,
ନୀଳ ଆକାଶର ପକ୍ଷୀଟି ସମ
ଉଡ଼ି ବୁଲୁଥାଏ ଏ ମୋ'ର ମନ ,
ଦୁନିଆଁ ପାରିରେ ଦରିଆ ପାରି ।''
(ରାଧାମୋହନ ଗଡ଼ନାୟକ )

ଉତ୍କଳ ବାଣୀଭଣ୍ଡାରକୁ ଯେଉଁ କେତେଜଣ ପ୍ରଥିତଯଶା କବି ସୁଜଳା ସୁଫଳା ଶସ୍ୟ ଶ୍ୟାମଳା କରିଯାଇଛନ୍ତି, ସେମାନଙ୍କ ମଧ୍ୟରୁ ସବୁଜ କବି ରାଧାମୋହନ ଗଡ଼ନାୟକ ଅନ୍ୟତମ । ସାଧନା ଥିଲେ ସିଦ୍ଧି ଅଛି, ଏହା ଯୁଗଯୁଗ ଧରି ସତ୍ୟ । ଏହି ଚିର ସତ୍ୟକୁ ଆଲେଖ୍ୟ କରି କବି ଗଡ଼ନାୟକ କବି ହେବାର ଚରମ ଲକ୍ଷ୍ୟ ପୂରଣ କରିପାରିଥିଲେ ତାଙ୍କ କାବ୍ୟ ସମ୍ଭାରମାନଙ୍କ ଦ୍ୱାରା, ଯାହା ଉତ୍କଳମାତାର ସାହିତ୍ୟରୂପକ ମାଟିକୁ ସ୍ୱର୍ଣ୍ଣପ୍ରସୂ କରିପାରିଛି । ଏହି କାବ୍ୟର ନାୟକ ଶତଶତ ଲେଖା ମାଧ୍ୟମରେ ନିଜକୁ ପ୍ରମାଣ କରିଯାଇଛନ୍ତି ଯେ ଅନେକ ଅନୁଭୂତିକୁ ନେଇ ସୃଷ୍ଟି କରିଯାଇଥିବା ଅମର ଗାଥା ତାଙ୍କର ସ୍ନେହ-ପ୍ରୀତି, ସୁଖ-ଦୁଃଖର ବିଭୂତି । ପ୍ରେମିକ କବି ମାୟାଧର ମାନସିଂହ ଏବଂ ବିପ୍ଳବୀ କବି ସଚ୍ଚିଦାନନ୍ଦ ରାଉତରାୟଙ୍କର ସେ ଥିଲେ ସମସାମୟିକ ।



ରାଧାମୋହନ ଗଡ଼ନାୟକଙ୍କର ଏକ ସୁଖ୍ୟାତି ଅଛି ଯେ, ସେ ଜଣେ ବିପ୍ଳବୀ କବି ସଚ୍ଚି ରାଉତରାୟ ଏବଂ ଗୋଦାବରୀଶ ମହାପାତ୍ରଙ୍କ ଭଳି । 'ବାଘ ସିଂହ ବଂଶ' ନାମରେ ପରିଚିତ ଗଡ଼ନାୟକ ପରିବାରର ସେ ଥିଲେ ଦାୟାଦ । ଲିଙ୍ଗରା ନଦୀକୂଳରେ ଅବସ୍ଥିତ ଏକ ଛୋଟିଆ ଗ୍ରାମ କଲଣ୍ଡାପାଳ (ବର୍ତ୍ତମାନ ଅନୁଗୁଳ ଜିଲ୍ଲା ) ଥିଲା ତାଙ୍କ ଜନ୍ମସ୍ଥାନ । ଶ୍ରୀ ମହାଦେବ ଗଡ଼ନାୟକ ଓ ଶ୍ରୀମତୀ ଗୋଲକମଣି ଦେଈଙ୍କର ଔରସରୁ ୧୯୧୧ ମସିହା ଅଗଷ୍ଟ ୨୫ ତାରିଖରେ ସେ ଜନ୍ମ ହୋଇଥିଲେ ଏବଂ ସାହିତ୍ୟ ଜଗତ ଭିତରକୁ ପ୍ରବେଶ କରିଥିଲେ ୧୯୧୯ ମସିହାରେ ଏବଂ ତାଙ୍କର ପ୍ରଥମ କବିତାର ନାମ ଥିଲା 'ତାରା' । ଯେତେବେଳେ ସେ ଥିଲେ, ଗଡ଼ ସନ୍ତରୀ ଉଚ୍ଚ ପ୍ରାଥମିକ ବିଦ୍ୟାଳୟର ଛାତ୍ର । ତୁଳସୀ ଦୁଇ ପତ୍ରରୁ ବାସିଲା ଭଳି କବିତାକୁ ତାଙ୍କ ଶବ୍ଦର ତୁଳୀରେ ଆଙ୍କିବା ଆରମ୍ଭ କରି ଦେଇଥିଲେ ଅତି ନିଖୁଣ ଭାବରେ ସେଇ ବୟସରୁ, ଯାହାଦ୍ୱାରା ତାଙ୍କ କବି ଜୀବନର ସୁବାସ ବିଚ୍ଛୁରିତ ହୋଇଯାଉଥିଲା ଚତୁର୍ଦ୍ଦିଗରେ । ଛାତ୍ରାବସ୍ଥାରେ ୧୯୨୪ ମସିହାରେ ତାଙ୍କ କବିତା 'ବନରାଜି ନୀଳା' ରେ ସେ ଲେଖିଥିଲେ-

''କିଏ ଗୋ ତୁ ?
କିଏ ଗୋ ତୁ ନବବେଶା, ଅନାଇ ମିହିରେ
ବିରାଜୁ ଉଦୟଗିରି–ଚାରୁ– ବେହରଣେ,
ତୋହରି ନବୀନ ଜ୍ୟୋତି ପାଇ ଧୀରେ ଧୀରେ ,
ଜାଗଇ ଧରଣୀ ରାଣୀ ନବ ଜାଗରଣେ ?''

ମାଟିର ମମତା ତାଙ୍କୁ ପ୍ରଗାଢ଼ ଭାବରେ ବାନ୍ଧି ରଖିଥିଲା, ଯଦ୍ୱାରା ମାଟିର ଗୁଣ ଗାନ କରିବାକୁ ଯାଇ ସେ ୧୯୩୫ ମସିହାରେ ଲେଖିଥିଲେ 'ସ୍ୱଦେଶ ପ୍ରେମ' ଅନୁବାଦ କବିତା, ଯାହା 'ସହକାର' ମାର୍ଗଶିର– ପୌଷ ସଂଖ୍ୟାରେ ପ୍ରକାଶିତ ହୋଇଥିଲା ଶ୍ରୀ ଶ୍ରୀଧର ଦାସଙ୍କ ନାମରେ ଏବଂ ୧୯୩୫ ମସିହାରେ ସମ୍ବଲପୁରରୁ ପ୍ରକାଶିତ 'ନବଯୁଗ'ରେ ମଧ୍ୟ ତାଙ୍କର 'ରାଜଜେମା' କବିତା ପ୍ରକାଶ ପାଇଥିଲା ଛଦ୍ମ ନାମ ଶ୍ରୀ – ରେ । ୧୯୩୬ରେ ମଧ୍ୟ 'ପଞ୍ଚାମୃତ' ୧୦ ଏବଂ ୧୧ ସଂଖ୍ୟାର ତାଙ୍କର ଏକ କବିତା ପ୍ରକାଶ ପାଇଥିଲା ରାଧାମୋହନ ପଟ୍ଟନାୟକ ନାମରେ, ଯାହା ତାଙ୍କୁ ବ୍ୟଥିତ କରିଥିଲା । ତଥାପି ବ୍ୟଥିତ ମନର ଅକୁହା କାହାଣୀ ସେମିତି ନିରବତା ଭିତରେ ରହିଯାଇଥିଲା ସତ , କିନ୍ତୁ ତାଙ୍କ ଲେଖନୀ ମୁନ ନିଥର ହୋଇଯାଇନଥିଲା । ସେ ଲେଖିଥିଲେ ଅନ୍ୟ ଏକ କବିତା 'ମାଟିର ମଣିଷ' । ଏ କବିତାଗୁଡ଼ିକ ତାଙ୍କ ଜନ୍ମମାଟି ଓ ମାଟିର ମଣିଷ ପ୍ରତି ଥିବା ଭକ୍ତି, ପ୍ରୀତି ଏବଂ ଭଲ ପାଇବାର ସମସ୍ତ ଉପାଦାନ ଆମକୁ ଯୋଗାଇଥାଏ । ପ୍ରକୃତି ପ୍ରେମୀ ଭାବରେ ତାଙ୍କ କବି ମନରୁ ଆଙ୍କି ଦେଇଯାଇଛନ୍ତି ମନର କାଳିରେ ଅନେକ ଛନ୍ଦ କାବ୍ୟ । ତାଙ୍କର କବି ମନ ଆକାଶରୁ ମାଟି ଓ ମାଟିରୁ ଆକାଶ ଛୁଇଁଥିଲା । ତେଣୁ ତାଙ୍କ କଲମ ମୁନରୁ ଝରି ଆସିଥିଲା ତାଙ୍କ ମନର କଥାକୁ ନେଇ ଅନେକ କବିତା । ସେ ସେଇ ମନର କଥାକୁ ପ୍ରକାଶ କରିବାକୁ ଯାଇ ଲେଖିଥିଲେ–

''କାହାର ସହିତ ଆଳାପ କରେ,
କାହାର ସହିତ ମେଳାପ କରେ ,
କାହାର ସହିତ ବିଳାପ କରେ ,
କାହାର ସହିତ ପ୍ରଳାପ କରେ ,
ଉଡ଼ି ବୁଲୁଥାଏ ଇଚ୍ଛାଚାରୀ,
କବି ହେବା ପାଇଁ ବାସନା ମୋର
ପ୍ରବଳ ଭାରିରେ ପ୍ରବଳ ଭାରି ।''

କବି ମଧୁକର ଅଳି ପରି ରସ ସଂଗ୍ରହରେ ମଜ୍ଜି ରହି ପୁଣି ଗାଇଛନ୍ତି –

''କବି ହେବା ପାଇଁ ବାସନା ମୋର
ଦିବସ ରାତିରେ ଦିବସ ରାତି,
ମୁଗ୍ଧ କିଶୋର ଅଳିଟି ପରି
ଅନ୍ତର ତଳେ ଆବେଗ ଧରି
ଉଠଇ ମାତିରେ ଉଠଇ ମାତି ।''

କବି ''ପୁଷ୍ପ''ଠାରୁ ଆରମ୍ଭ କରି ''ସବୁ ପତିତର ମଥିତପ୍ରାଣ''ରୁ ରସ–ନିର୍ଯ୍ୟାସ ଆହରଣ କରିଛନ୍ତି । ତେଣୁ ତାଙ୍କ ଲେଖନୀରୁ ଝରି ଆସିଥିଲା –

''ସବୁରି ଲୁହରେ ସବୁରି ଲହୁ
ଅନ୍ତରେ ଆଣି କରଇ ମହୁ ।''

ଏଥିରୁ ସ୍ପଷ୍ଟ ଯେ କବି ଗଡ଼ନାୟକଙ୍କ ମନ କିପରି ସର୍ବଦା ଜଳେ, ସ୍ଥଳେ, ଗଗନେ, ପବନେ ଯାଇ ଉଡୁଥିଲା, ଆଉ ତାଙ୍କର ଦରଦୀ ହୃଦୟ ସର୍ବଦା ଅନ୍ୟର ଦୁଃଖରେ ଦୁଃଖୀ ହୋଇ ଉଠୁଥିଲା । ସେଇସବୁ ଅନୁଭୂତିକୁ ସାଉଁଟି ନେଇ ସେ ଲେଖିଯାଇଛନ୍ତି କିଛି ଅଲିଭା ଗୀତି ଛନ୍ଦ । ପ୍ରବଳ ଇଚ୍ଛାଶକ୍ତି ପାଖରେ ଈଶ୍ୱର ବି ହାର ମାନନ୍ତି, ଏଥିରୁ ପ୍ରମାଣ ମିଳେ । ଜଣେ ସ୍ପଷ୍ଟବାଦୀ, ନିର୍ଭୀକ, କବି ସେ ଥିଲେ । ସେଥିପାଇଁ ତାଙ୍କ ମନର କବିତା ଲେଖି ସେ ଗାଇ ଉଠିଥିଲେ –

''ବଣ ମୂଳକର ମୁହିଁ ବାଘ ସିଂହ ବଂଶଧର,
ସର୍କସେ ଯାଇ ବଶ ହେଲିନାହିଁ,
ହୋଇ ପାରିଲିନି ଅନ୍ଧଚର ।''
'କଳା ସୃଷ୍ଟିର ଉପଯୋଗ କରି
କରିନେଲି ମୋର କଳାର କାଳ,
ଆହାତ ବୁକୁରେ ଫେରିଲି ମୋ ପଥେ ,
କାଳିମା ଘେନି ମୋ' ପୁରସ୍କାର ।''

ନିଜ ଜୀବଦ୍ଦଶାରେ ପ୍ରେମ, କରୁଣା, ମାଟିର ମମତା, ନିର୍ଭୀକ ଭାବ ଫୁଟାଇ ପାରିଥିବା କବି ଗଡ଼ନାୟକଙ୍କ ସାମଗ୍ରିକ କୃତିକୁ ନେଇ ଆମେ ଯଦି ବିଚାର କରିବା, ତେବେ କାବ୍ୟଭାରତୀ ମା' ସରସ୍ୱତୀଙ୍କ ଅପାର କରୁଣାରୁ ସେ ସୃଷ୍ଟି କରିଯାଇଥିବା ଅମର ଲେଖନୀରୁ ଅମର ଗାଥା, ଯାହାଥିଲା ତାଙ୍କ ହୃଦୟର ସ୍ୱର, ସେସବୁ ଉତ୍କଳମାତାର ସାରସ୍ୱତ ଭଣ୍ଡାରକୁ ଯୁଗଯୁଗ ଧରି ଯାଦୁକର ଭାବରେ ତାଙ୍କର ଯାଦୁକରୀ ଗୁଣରେ ସମସ୍ତଙ୍କୁ ବାନ୍ଧି ରଖିଥିବେ, ଏ କଥା ଧ୍ରୁବ ସତ୍ୟ । ତାଙ୍କର ସମସ୍ତ ସାହିତ୍ୟ କୃତି ସଦା ସର୍ବଦା ସୂର୍ଯ୍ୟସମ ଧରାପୃଷ୍ଠରେ ସାହିତ୍ୟର ଆଲୋକଧାରା ବିଚ୍ଛୁରିତ କରି ଚାଲିଥିବ । ୧୯୩୮ ମସିହାରେ ଗଡ଼ଜାତ ଆନ୍ଦୋଳନ ସମୟରେ ଚାଲୁଥିବା କ୍ୟାମ୍ପମାନଙ୍କରେ ତାଙ୍କ ଲିଖିତ କବିତା ଗାନ କରାଯାଉଥିଲା । ସେ ଥିଲେ ସ୍ୱକୀୟ ପରିଧିରେ ଏକକ ଏବଂ ସ୍ୱତନ୍ତ୍ର । ତେଣୁ ତାଙ୍କୁ ସବୁଜ ଯୁଗର କବି କହୁଥିବା ବେଳେ ତାଙ୍କର କାବ୍ୟ ସୃଷ୍ଟିକୁ ଆଧାର କରି ନାରୀ କବି ଶ୍ରୀମତୀ ମନମୋହିନୀ ଦେବୀ ୧୯୪୯ ମସିହାରେ ତାଙ୍କ ରଚିତ 'ସବୁଜ କବି' ଶୀର୍ଷକ କବିତାରେ କହିଛନ୍ତି -

''ଶିଳ୍ପୀ ମୁକୁଟ ମଣି ,
ଉତ୍କଳ ନଭ ପ୍ରତିଭା-ଦୁର୍ଗ-ନାୟକ-ପଦେ ମୁଁ ଗଣି ।
କିମ୍ପାଇ କେତେ ଭାବୁକ-ବକ୍ଷ
ଚମକାଇ କେତେ ସାଧନା-କକ୍ଷ
କାବ୍ୟ ନାୟିକା କାବ୍ୟ ତାରକା
ଯୁଗ-ନଭେ ଦେଲା ଦେଖା
ମୁଗ୍ଧ ସାଧକ ପରାଣେ ପାତିଲା
ନବୀନ ଆଲୋକ ରେଖା । ''

୧୯୪୬ ମସିହାରେ ଶ୍ରୀ ଜ୍ଞାନୀନ୍ଦ୍ର ବର୍ମା ତାଙ୍କର 'ଲାଲ୍ ଘୋଡ଼ା' ଉପନ୍ୟାସରେ ଶ୍ରୀ ଗଡ଼ନାୟକଙ୍କ ନାମରେ ଉତ୍ସର୍ଗ କରି ଲେଖିଛନ୍ତି -

''ତୁମେ ଅଗଦ୍ୟ । ତେଣୁ ତୁମ ହାତରେ
ଏ ଗଦ୍ୟର ଉପହାର ଦେଉଛି ।''

ଏଇ ବିପ୍ଳବୀ କବି କେବଳ ଓଡ଼ିଶା ମାଟିରେ ତାଙ୍କର ସୃଷ୍ଟି ସବୁ ପାଇଁ ଚର୍ଚ୍ଚିତ ନଥିଲେ, ସମଗ୍ର ଭାରତବର୍ଷରେ ମଧ୍ୟ ଖ୍ୟାତି ଅର୍ଜନ କରିଥିଲେ । ତାଙ୍କ ଲେଖନୀରୁ ଝରି ଆସିଥିବା କୃତିଗୁଡ଼ିକ ହେଲା -'ମାଳିନୀ ନଦୀର ଢେଉ', 'ମହାଯାତ୍ରାର ଶେଷ ସର୍ଗ', 'ଗାନ୍ଧୀ ଗାଥା', 'ଅନୁଗୁଳ' ( କାବ୍ୟ), 'ପାଣ୍ଡୁ', 'କାଳିଦାସ' (କାବ୍ୟ ନାଟିକା ), 'କୁହୁଡ଼ିର ଇତିକଥା', 'ଖଦଡ଼ ଓ ଅନ୍ୟାନ୍ୟ କବିତା', 'ଆଉ ଜଣେ' (ଗୀତି କବିତା), 'ନୂତନ ଦ୍ରୌପଦୀ' (ଆଧୁନିକ କାବ୍ୟ), 'ଆମ ଗୀତା', 'ବାଇଆର ଗୀତ' (ସଙ୍ଗୀତ), 'କିଏ ଆମ ସରିସା' ( ଶିଶୁ କବିତା), 'ଗୀତ ଗୋବିନ୍ଦ', 'ଦେଶ ବିଦେଶର ପ୍ରେମ-କବିତା', 'ସେକ୍ସପିୟରଙ୍କ ସନେଟ୍' (ଅନୁବାଦ କବିତା) ଆଦି ପ୍ରଧାନ । ସେ ମଧ୍ୟ 'ନବଯୁଗ ସାହିତ୍ୟ ସଂସଦ' ତରଫରୁ 'ନାରୀ କବି କୁନ୍ତଳା କୁମାରୀ' 'ସ୍ମରଣିକା'ର ସମ୍ପାଦନା ଦାୟିତ୍ୱ ସହ ୧୯୫୫ରେ 'ଏକଚକ୍ର' ନାମକ ଗୋଟିଏ ସାହିତ୍ୟ ପତ୍ରିକାର ସମ୍ପାଦନା କରି ନିଜ ପ୍ରତିଭାର ପରିଚୟ ଦେଇଥିଲେ ସେସମୟରେ । ୧୯୬୦ ମସିହାରେ ନୂଆଦିଲ୍ଲୀରୁ ପ୍ରକାଶିତ 'କାରାଭାନ୍' ପତ୍ରିକାର ସେପ୍ଟେମ୍ବର ସଂଖ୍ୟାରେ ଗଡ଼ନାୟକଙ୍କ ସମ୍ପର୍କରେ ପ୍ରକାଶିତ ଏକ ଆଲୋଚନାତ୍ମକ ନିବନ୍ଧରୁ ଜଣାଯାଏ ଯେ, ଓଡ଼ିଶା ମାଟିର ସନ୍ତାନ ରାଧାମୋହନ ଗଡ଼ନାୟକ ତତ୍କାଳୀନ ଶ୍ରେଷ୍ଠତ୍ୱ ହାସଲ କରିଥିବା କବିମାନଙ୍କ ମଧ୍ୟରୁ ଜଣେ ଥିଲେ , ଯେ କି ଓଡ଼ିଆ କାବ୍ୟ କବିତା, ଗୀତ ତଥା ଅନ୍ୟାନ୍ୟ ବିଭାଗ ରଚନା କ୍ଷେତ୍ରରେ ଅନେକ ଉନ୍ନତି ଆଣି ପାରିଥିଲେ । ୧୯୩୮-୩୯ ମସିହାରେ ବାରିପଦାରେ ଥିବାବେଳେ ଏହି ପ୍ରଚଣ୍ଡ ପ୍ରତିଭାଧର କବି ସମୟ ପାଇଲେ ବାରିପଦା ଲାଇବ୍ରେରୀ ଏବଂ ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟଙ୍କର ବ୍ୟକ୍ତିଗତ ଲାଇବ୍ରେରୀକୁ ଯାଇ ବିଭିନ୍ନ ଭାଷାର ବହି ପଢ଼ିବାର ସୁଯୋଗ ପାଇଥିଲେ । ତେଣୁ ସେ କେବଳ ଓଡ଼ିଆ ଭାଷା ନୁହଁ, ଇଂରାଜୀ, ହିନ୍ଦୀ, ବଙ୍ଗଳା ଓ ସଂସ୍କୃତ ଭାଷାରେ ମଧ୍ୟ ପ୍ରକାଶିତ ଅନେକ ପୁସ୍ତକ ପଢ଼ି ନିଜର ଜ୍ଞାନର ପରିସୀମାକୁ ଆହୁରି ଅଧିକ ବଢ଼ାଇ ପାରିଥିଲେ ।

ଏହି କାବ୍ୟ ନାୟକ ତାଙ୍କର ସୃଷ୍ଟି ମାଧ୍ୟମରେ ଓଡ଼ିଶାର ଅନେକ ସାହିତ୍ୟ ଅନୁଷ୍ଠାନର ସଭ୍ୟ ଓ ସଭାପତି ପଦ ମଣ୍ଡନ

କରିପାରିଥିଲେ । ୧୯୨୪ ରୁ ୧୯୬୮ ମସିହା ପର୍ଯ୍ୟନ୍ତ ତାଙ୍କ ସାହିତ୍ୟ ସାଧନାର ପଥ ଥିଲା । ବହୁ ବିଳମ୍ବରେ ତାଙ୍କର ଅନେକ ଲେଖା ପ୍ରକାଶିତ ହୋଇଥିଲେ ମଧ୍ୟ ସେ ଥିଲେ ଯଥାର୍ଥରେ କାବ୍ୟ ନାୟକ । 'କାଳିଦାସ' ତାଙ୍କର ପ୍ରଥମ କାବ୍ୟ ନାଟକ ହୋଇଥିଲେ ମଧ୍ୟ ତା' ପୂର୍ବରୁ ସେ ଜଣେ ଗୀତିକବି ଭାବରେ ଖୁବ୍ ଖ୍ୟାତି ଅର୍ଜନ କରିସାରିଥିଲେ । ତାଙ୍କର ସାମଗ୍ରିକ କୃତିକୁ ଲକ୍ଷ୍ୟ କରି ତେଣୁ ପ୍ରେମିକ କବି ମାୟାଧର ମାନସିଂହ ଲେଖିଥିଲେ, ଏହି ନବ ଦିଗନ୍ତର ଯଶସ୍ୱୀ କବି ଆଜି ତାଙ୍କ ଜନନୀ, ମାଟି ମାଆ କୋଳରେ ଚିରଦିନ ପାଇଁ ଚୁପ୍‌ଚାପ୍ ଶୋଇ ଯାଇଛନ୍ତି ସିନା, ତାଙ୍କର କାବ୍ୟ ନାୟିକାମାନେ ଏବଂ ବିପ୍ଳବଭରା କାବ୍ୟକବିତାମାନଙ୍କ ଦ୍ୱାରା ଚିର ଭାସ୍ୱର ହୋଇ, ଚିର ସବୁଜ ହୋଇ ସାହିତ୍ୟ ଜଗତରେ ରହିଥିଲେ, ରହିଛନ୍ତି, ରହିବେ ମଧ୍ୟ, ଏଥିରେ ଦ୍ୱିମତ ନାହିଁ । ସାମ୍ପ୍ରତିକ ଦେଶର ପରିସ୍ଥିତିରେ ମନେ ପଡୁଛି, ସେ ପୁଣି ସେଇ ଅମର ରାଇଜରୁ ଫେରିଆସି ଗାଇଉଠନ୍ତେ କି ସେଇ ହୃଦୟସ୍ପର୍ଶୀ କବିତା, ବିପ୍ଳବର ବୀଜ ବୁଣି ଦେଇଯାଆନ୍ତେ କି, ଶୋଇ ପଡ଼ିଥିବା ଓଡ଼ିଆମାନଙ୍କୁ ପୁଣି ଶୁଣାଇ ଦେଇ ଯାଆନ୍ତେ କି ତାଙ୍କ ବିପ୍ଳବର ସ୍ୱର ଝଙ୍କାରରେ–

''ରାଇଜ ଛାଡ଼ି ଯେ ପଳାଇ ଆସିଛୁ ଆମେ
ଭୀରୁ ବୋଲି ସିନା ଭାବୁଥିବ ତୁମ୍ଭେମାନେ,
ନୋହୁଁ ଆମେ ପ୍ରାଣ ରଙ୍କ,
ଆମେରେ ଏଇଠି ବଜାଇବୁ ଆଜି
ମଣିଷର ଜୟ ଶଙ୍ଖ ।''

---

ପ୍ଲଟ୍ ନଂ– ୧୮୬୮, ଲେନ୍–୬, ଭକ୍ତମଧୁ ନଗର
ଗଣ୍ଡମୁଣ୍ଡା, ଖଣ୍ଡଗିରି , ଭୁବନେଶ୍ୱର – ୩୦



# ଓଡ଼ିଶାରେ ଦୋଳଯାତ୍ରା

**ବିପିନ ବିହାରୀ ମହାନ୍ତି**



ଦୋଳୋତ୍ସବ ବା ବସନ୍ତୋତ୍ସବ ଏକ ଜାତୀୟପର୍ବ ହେଲେ ହେଁ, ଓଡ଼ିଶାରେ ଏହି ଉତ୍ସବ ବା ଯାତ୍ରାକୁ ସ୍ୱତନ୍ତ୍ର ମାନ୍ୟତା ଏବଂ ଗୁରୁତ୍ୱ ଦିଆଯାଏ । ଦ୍ୱାଦଶ ଶତାବ୍ଦୀର ଓଡ଼ିଆ ଜ୍ୟୋତିର୍ବିଦ୍ ଶତାନନ୍ଦଙ୍କ 'ଶତାନନ୍ଦ ସଂଗ୍ରହ' ଅନୁସାରେ ହିସାବ କଲେ ଓଡ଼ିଶାରେ ଏହା ଦୀର୍ଘ ୮୦୦ବର୍ଷ ଧରି ପାଳିତ ହୋଇ ଆସୁଅଛି । ଏହି ଯାତ୍ରା ଫଗୁଣ ଶୁକ୍ଳ ଦଶମୀଠାରୁ ଆରମ୍ଭ ହୋଇ ଚୈତ୍ର କୃଷ୍ଣ ପଞ୍ଚମୀ ବା ସ୍ଥାନ ବିଶେଷରେ କୃଷ୍ଣ ଦଶମୀ ପର୍ଯ୍ୟନ୍ତ ମହାସମାରୋହରେ ପାଳନ କରାଯାଏ । ଗୋଟିଏ ପଟେ ଋତୁରାଜ ବସନ୍ତଙ୍କର ଆଗମନକୁ ସ୍ୱାଗତ କରିବାରେ ଉଦ୍ଦିଷ୍ଟ ବୋଲି କୁହାଯାଉଥିବା ବେଳେ, ଅନ୍ୟ ପକ୍ଷରେ ଏହା ବସନ୍ତୋତ୍ସବର ମୁଖ୍ୟ ଆରାଧ୍ୟ ଠାକୁର 'ଶ୍ରୀ ରାଧାକୃଷ୍ଣ'ଙ୍କ ପାଇଁ ଉଦ୍ଦିଷ୍ଟ ବୋଲି ଗ୍ରହଣ କରାଯାଏ । ଅନ୍ୟାନ୍ୟ ଉତ୍ସବରେ ଠାକୁରଙ୍କ ଦର୍ଶନାର୍ଥେ ଏବଂ ଭୋଗରାଗ ପାଇଁ ଭକ୍ତମାନେ ମନ୍ଦିରକୁ ଯାଉଥିବା ବେଳେ, ଏହି ଉତ୍ସବରେ ଠାକୁରମାନେ ଦୋଳ ବା ବିମାନରେ ବସି ଭକ୍ତଙ୍କ କାନ୍ଧରେ ଗ୍ରାମ ମଧ୍ୟକୁ ପ୍ରବେଶ କରି ପ୍ରତିଟି ଦ୍ୱାରେ ଉପସ୍ଥିତ ହୁଅନ୍ତି ଏବଂ ଭକ୍ତମାନେ ଠାକୁରମାନଙ୍କୁ ଅବିର, ଭୋଗ ଓ ନୈବେଦ୍ୟ ଅର୍ପଣ କରିଥାନ୍ତି । ରାଧାକୃଷ୍ଣ ଦୋଳରେ ବିଜେ କରି ଗ୍ରାମ ପରିକ୍ରମା କରନ୍ତି ବୋଲି ଏହାର ନାମ ଦୋଳଯାତ୍ରା ।

ରାଧାକୃଷ୍ଣଙ୍କର ଦୋଳ ବିଜେ ନେଇ ଅଚ୍ୟୁତାନନ୍ଦ ଯାହା କହିଛନ୍ତି, ସେଥିରୁ କିଛିଟା ପଙ୍କ୍ତି ଏଠାରେ ଉଦ୍ଧୃତ କଲୁ ।

ଫଗୁଣ ମାସରେ ଦୋଳ ଗୋବିନ୍ଦ,<br>
ଫଗୁ ଖେଳୁଛନ୍ତି ପରମାନନ୍ଦ ॥<br>
ଅବିର ସଙ୍ଗେ ଝାଲେରୀ ମିଶାଇ,<br>
ଫଗୁ ଖେଳୁଛନ୍ତି ଯଦୁ ଗୋସାଇଁ<br>
ମୋ କାହ୍ନୁରେ - (ବାରମାସୀ କୋଇଲି) ॥

'ରାମାୟଣ' ଦଶରଥଙ୍କର କୈକେୟୀଙ୍କ ପ୍ରତି ଏକ ପ୍ରତିଶ୍ରୁତିବଦ୍ଧତାର ଫଳସ୍ୱରୂପ ପରି ଦୋଳୋତ୍ସବର ଫଗୁଖେଳ କୃଷ୍ଣଙ୍କର ରାଧାଙ୍କ ପ୍ରତି ଏକ ଅଙ୍ଗୀକାରବଦ୍ଧତାର ନିଦର୍ଶନ ବୋଲି କୁହାଯାଏ । ଏନେଇ ଅଚ୍ୟୁତାନନ୍ଦ ପୁନଶ୍ଚ କୁହନ୍ତି :

ଯେତେ ଦୂର ଆମେ ଗୋପପୁରେ ରହିଥିବା<br>
କହୁଅଛି ବୃନ୍ଦାବନେ ଆମେ କେଳି ଆଚରିବା ॥

ଏହି ଫଗୁଣରେ ଦୋଳ ଗୋବିନ୍ଦ ବୋଲାଇ
ଫଗୁ ଖେଳୁଥିବା ଆମେ ଚଉଦୋଳେ ରହି ॥
– ଗୋପାଳ ଓଗାଳ

ଏହି ଉତ୍ସବରେ ଠାକୁରମାନଙ୍କ ଗ୍ରାମ ପରିକ୍ରମା ବେଳେ ଫଗୁ ଓ ଝାଲେରୀ ଇତ୍ୟାଦି ସହ ଭୋଗ ଅର୍ପଣ କରାଯାଏ । ଏହିପରି ବୁଲି ଭୋଗଖିଆକୁ ଚାଚେରୀ ଭୋଗ କୁହାଯାଏ । ଚାଚେରୀ ଭୋଗ ଖିଆବେଳେ ଗ୍ରାମଗୁଡ଼ିକ ବିଶେଷ କରି କେଉଟମାନଙ୍କର ଘୋଡ଼ା ନାଚ, ଗଉଡ଼ମାନଙ୍କର ଲଉଡ଼ି ଖେଳ, ଚଢ଼େୟା ଚଢ଼େୟାଣୀଙ୍କ ଗୀତିନାଟ୍ୟ, ଶଙ୍ଖଧ୍ୱନି, ବଂଶୀବାଦନ, ସଂକୀର୍ତ୍ତନ ଏବଂ ମଶାଲର ରୋଷଣୀ ପଟୁଆରରେ ପ୍ରକମ୍ପିତ ହୋଇ ଉଠୁଥାଏ । ଠାକୁରମାନଙ୍କର ଗ୍ରାମ ପରିକ୍ରମା ଓ ଚାଚେରୀ ଭୋଗଖିଆ ଫଗୁଣ ଶୁକ୍ଳ ଚତୁର୍ଦ୍ଦଶୀ ଦିନ ସୁଦ୍ଧା ସରିଯାଇଥାଏ । ପୂର୍ଣ୍ଣମୀ ଦିନ ଆରମ୍ଭରୁ ଦୋଳ ମେଳଣ । ଏହି ମେଳଣ ନିର୍ଦ୍ଦିଷ୍ଟ ଅଞ୍ଚଳରେ ଗୋଟିଏ ଗାଁର ଗାଁ ମୁଣ୍ଡ ବା କୋଉ ଆମ୍ବ ତୋଟା ଅବା ମେଳଣ ପଡ଼ିଆରେ ଅନୁଷ୍ଠିତ ହୁଏ । ଏହି ମେଳଣର ମୁଖ୍ୟ ଦେବତା ଯିଏ, ସିଏ ଅନ୍ୟଗ୍ରାମ ବା ଅନ୍ୟ ଦେବତାମାନଙ୍କୁ ନିମନ୍ତ୍ରଣ କରିଥାନ୍ତି ଏବଂ ସେମାନେ ଏଥିରେ ଯୋଗ ଦିଅନ୍ତି ।

ଦୋଳ ପଡ଼ିଆରେ ଠାକୁରମାନେ ସ୍ଥାନୀୟ ବ୍ୟବସ୍ଥା ଅନୁଯାୟୀ ଦିନେ ବା ଦୁଇଦିନ ରୁହନ୍ତି । ଏହି ସମୟରେ ଠାକୁରମାନଙ୍କର ସଭା ହୁଏ ବୋଲି ବିଚାର କରାଯାଏ । ଏଠାରେ ସୂଚାଇ ଦିଆଯାଇପାରେ ଯେ, ଯଦିଓ ଦୋଳୋତ୍ସବର ମୁଖ୍ୟ ଠାକୁର ହେଉଛନ୍ତି ଶ୍ରୀ ରାଧା-କୃଷ୍ଣଙ୍କର ଯୁଗଳମୂର୍ତ୍ତି, ତଥାପି ଗ୍ରାମର ଅନ୍ୟାନ୍ୟ ଦେବତା ଯଥା ଭଗବତ ଗୋସାଇଁ, ମଦନ ମୋହନ, ଶ୍ରୀ ମହେଶ୍ୱର ଏବଂ ଅନ୍ୟାନ୍ୟ ଗ୍ରାମାଧିପତି ଠାକୁରମାନେ ଏ ମେଳଣରେ ଯୋଗ ଦେଇଥାନ୍ତି ।

ମେଳଣ ବେଦୀରେ ଠାକୁରମାନଙ୍କୁ ଫଗୁ ବା ଅବିର ସହ ଭୋଗ ଅର୍ପଣ କରାଯାଏ । ଭୋଗ ଭିତରେ ଥାଏ ଲିଆ, ଉଖୁଡ଼ା, ଚୂଡ଼ା ଉଖୁଡ଼ା, ସାକର, ଫେଣି, ଚଣା, କଦଳୀ, ଚୂଡ଼ାଘଷା, କାକୁଡ଼ି, ଆମ୍ବ, ଆଖୁ ଏବଂ ଏମିତି କିଛି । ଏସବୁ ଅର୍ପଣ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥାରେ ଭୋଗ ଆଟିକା ଓ ସରା ଇତ୍ୟାଦିର ବ୍ୟବସ୍ଥା ଥାଏ ।

ମେଳଣ ବା ବିଦାୟ ଦିନ ରନ୍ ମଣ୍ଡପକୁ ସ୍ଥାନାଧିପତି ପତିଙ୍କ ପରେ ଗୁରୁତ୍ୱ ଓ ବିଶେଷତ୍ୱ ନେଇ ଠାକୁରମାନେ ରନ୍ ମଣ୍ଡପକୁ ଉଠନ୍ତି ବା ରନ୍‌ମଣ୍ଡପ ପରିକ୍ରମା କରନ୍ତି । ରନ୍‌ମଣ୍ଡପକୁ ମଧ୍ୟ ଭୋଗମଣ୍ଡପ କୁହାଯାଏ । ତତ୍‌ପରେ ଅଗରୁ ବର୍ଷଣ, ବାଜାବାଜାନ୍ତରୀ, ଶଙ୍ଖ, ତୂରୀଭେରୀ ଇତ୍ୟାଦି ନିନାଦରେ ସ୍ଥାନଟି ଚେଇଁଉଠେ । ଦିଅଁ, ଦେଉଳ, ମଣିଷ, ପବନ ଓ ଆକାଶ ପାଲଟିଯାଏ ଅଗୁରମୟ । ଏହାପରେ ଠାକୁରମାନେ ସ୍ୱ ସ୍ୱ ଗ୍ରାମ ବା ମନ୍ଦିରକୁ ପ୍ରତ୍ୟାବର୍ତ୍ତନ କରନ୍ତି ।

ହରିରାଜପୁର ଓ ପଞ୍ଚପିଢ଼ି ପରି କେତେକ ପ୍ରସିଦ୍ଧ ପଞ୍ଚୁଦୋଳ ମେଳଣ ପରେ ବି ଯାତ୍ରା ସରେ ନାହିଁ । ମାସେ ଯାଏଁ ଏଠାରେ ଥିଏଟର, ନାଚ ସୁଆଙ୍ଗ, ପାଲା, ସିନେମା, ସର୍କସ ଏବଂ ମୀନାବଜାର ଇତ୍ୟାଦି ଚାଲିଥାଏ । ଏହି ମେଳାରେ କୁଲା, ଛାଞ୍ଚୁଣୀ, ଶିଳ, ଶିଳପୁଆଠୁ ଆରମ୍ଭ କରି ଶଗଡ଼, ବଳଦ, ବାସନକୁସନ, କାଠ ସାମଗ୍ରୀ, ମିଠା ଦୋକାନ, ପରିବା ଦୋକାନ, ଡାଲି ଚାଉଳ ଦୋକାନ, ମନୋହରୀ ଦୋକାନରେ ଇତ୍ୟାଦି ହରେକ୍ ମାଲ ବଣିଜ ଚାଲିଥାଏ । ଅନ୍ୟାନ୍ୟ ଦୋକାନ ଭିତରେ ଲୁହାଦୋକାନ, କଂସା ଓ ପିତ୍ତଳ ବାସନ ଦୋକାନ, ଜୋତା ଦୋକାନ, ଆଧୁନିକ ଫାଇବର ଦୋକାନ, ଷ୍ଟିଲ ବାସନ ଦୋକାନ, ପ୍ଲାଷ୍ଟିକ୍ ସରଞ୍ଜାମ ଓ ସପ ମଶିଣା ଦୋକାନ ଇତ୍ୟାଦି ମୁଖ୍ୟ ଆକର୍ଷଣ ଥାଏ । ଲୋକେ ବର୍ଷକ ପାଇଁ ଘରର ଦରକାରୀ ସାଜସଜ୍ଜା ଏତିକି ବେଳେ କ୍ରୟ କରିଥାଆନ୍ତି । ତେବେ ଅଧିକାଂଶ କାରବାର ମଧ୍ୟରେ ପ୍ରଧାନ ଥାଏ ବିବାହ ଏବଂ କୃଷି ସାମଗ୍ରୀ ।

ଦୋଳପୂର୍ଣ୍ଣମୀ ଦିନ ଗୌଡ଼ୀୟ ବୈଷ୍ଣବ ଧର୍ମାବଲମ୍ବୀମାନେ ଚୈତନ୍ୟ ମହାପ୍ରଭୁଙ୍କର ଷୋଡଶ ଶତାବ୍ଦୀରେ ଏହି ଦିନରେ ଓଡ଼ିଶା ଆଗମନକୁ ଉପଜୀବ୍ୟ କରି ସେମାନେ ବି ଏହାକୁ ମହାସମାରୋହରେ ପାଳନ କରନ୍ତି । ଓଡ଼ିଶାର ଗଉଡ଼ମାନେ ନିଜକୁ ଯଦୁବଂଶୀୟ ବୋଲି ପରିଚିତ ଦେଇ ଦୋଳପୂର୍ଣ୍ଣିମାକୁ ତାଙ୍କର ଶ୍ରେଷ୍ଠ ପର୍ବ ରୂପେ ପାଳନ କରନ୍ତି ତଥା ଗୋଷ୍ଠରେ ଧେନୁପୂଜା କରନ୍ତି । ତା' ସହିତ ନାନାରଙ୍ଗ ବେରଙ୍ଗର ଧୋତି ବା ଗାମୁଛା ପିନ୍ଧି ଏବଂ ଅଣ୍ଟାରେ ଘାଗୁଡ଼ି ବାନ୍ଧି କୃଷ୍ଣଲୀଳା ସଂପର୍କିତ ଅତ୍ୟୁତାନନ୍ଦଙ୍କ ଓଗାଳଗୀତ ଗାଆନ୍ତି ଏବଂ ଲଉଡ଼ି ଖେଳ ଖେଳନ୍ତି ।

ପରମ୍ପରାକ୍ରମେ ଦୋଳପୂର୍ଣ୍ଣିମାକୁ ଆଧାର କରି କୋଠିଆ ତା'ର ଜୀବିକା ଆରମ୍ଭ କରେ । କୃଷକମାନେ ତାଙ୍କ କୃଷିକାର୍ଯ୍ୟର ଅୟମାରମ୍ଭ କରନ୍ତି । ନୂଆପାଞ୍ଜି ଭାଗବତ ଘରେ ବା ଗ୍ରାମଦେବତୀଙ୍କ ପାଖେ ପାଠ କରାଯାଏ । ଗାଁ ଅବଧାନେ ଆଗାମୀ ବର୍ଷ ପାଇଁ କୃଷି ଜଳବାୟୁ, ବର୍ଷା, ଦଶା, ମହାଦଶା, ପ୍ରାକୃତିକ ଦୁର୍ବିପାକ ଇତ୍ୟାଦି ସଂପର୍କରେ ପାଞ୍ଜିରୁ ସମ୍ୟକ୍ ସୂଚନା ଦିଅନ୍ତି । ଏହିଦିନ ପୂର୍ବରୁ ଥିବା ସମସ୍ତ ହଇଗୋଳ, ମନମନାନ୍ତର, ବାସନ୍ଦ ବିଚାର ହୁଏ ଏବଂ ତୁଟେ, ନୋହିଲେ ଠାକୁର ବାସନ୍ଦ ଘରୁ ଭୋଗ ଖାଆନ୍ତି ନାହିଁ ।

ପୂର୍ଣ୍ଣିମାବାସୀ ଅର୍ଥାତ୍ ଚୈତ୍ର ପ୍ରଥମ ଦିନ ହିଁ ହୋଲି । ହୋଲି ହେଉଛି ରଙ୍ଗ ଓ ପିଚକାରୀର ଖେଳ । ଏହା ରାଧାକୃଷ୍ଣ ଓ ଗୋପୀମାନଙ୍କ ରସରାସକୁ ଆଧାର କରି ବସନ୍ତୋତ୍ସବର ଏକ ରଙ୍ଗର ଦିନ । ତେବେ ଏହିଦିନ ହରିଣ୍ୟ କଶିପୁ ପୁତ୍ର ପ୍ରହ୍ଲାଦକୁ ମାରିବା ପାଇଁ ଷଡ଼ଯନ୍ତ୍ର କରି ଭଉଣୀ ହୋଲିକାକୁ ପ୍ରେରଣ କରିଥିଲା । ହୋଲିକା ବର ପାଇଥିଲା ଯେ ସେ ନିଆଁରେ ପୋଡ଼ି ମରିବ ନାହିଁ ଅଥଚ ପ୍ରହ୍ଲାଦକୁ କୋଳେଇ ନିଆଁ ଗଦାରେ ବସନ୍ତେ, ସେ ନିଜେ ଜଳିଗଲା । ରଖେ ହରି ମାରେ କିଏ ? ପ୍ରହ୍ଲାଦ ବଂଚିଗଲା । ଏଣୁ ହୋଲିକାର ମରଣ ଓ ପ୍ରହ୍ଲାଦର ପ୍ରାଣରକ୍ଷା ହେତୁ ଲୋକେ ସେଦିନ ଖୁସିରେ ରଙ୍ଗ ଖେଳିଥିଲେ ବୋଲି ଏହାକୁ ହୋଲି ମଧ୍ୟ କୁହାଯାଏ । ହୋଲିର ରଙ୍ଗ ପ୍ରସ୍ତୁତି ଏହାର ତିନିଦିନ ପୂର୍ବରୁ ଆରମ୍ଭ ହୋଇଥାଏ । କେବଳ ଖେଳ ହୋଲିଦିନ ହୁଏ । କେତେକଙ୍କ ଘରେ ଲୋକେ ନୂତନ ବସ୍ତ୍ର ପରିଧାନ କରନ୍ତି ଏବଂ ଘର ଘର ବୁଲି ଜାତି ଓ ବର୍ଣ୍ଣ ନିର୍ବିଶେଷରେ ସର୍ବସାଧାରଣରେ ସମ୍ପର୍କିତ ବା ଅସମ୍ପର୍କିତ ଲୋକଙ୍କ ସହ ହୋଲି ଖେଳନ୍ତି । ତେବେ ରଙ୍ଗର ମଜ୍ଜା ଉଠାନ୍ତି ସଂପର୍କୀୟ ଓ ପରିଚିତି ଲୋକମାନଙ୍କ ମଧ୍ୟରେ ।

ହୋଲି ପର୍ବ ହେଉଛି ସ୍ନେହ, ପ୍ରେମ ଓ ସଦ୍‌ଭାବନାର ପ୍ରତୀକ ଏବଂ ସର୍ବୋପରି ଏହା ଏକ ମହାନ ଜାତୀୟ ପର୍ବ । ଏହା ହିନ୍ଦୁମାନଙ୍କ ପର୍ବ ହେଲେ ହେଁ ଅଧୁନା ସବୁ ଧର୍ମ ଓ ସଂପ୍ରଦାୟର ବ୍ୟକ୍ତିମାନେ ଏଥିରେ ସାମିଲ ହୋଇ ମହାନ୍ ଭାରତୀୟତା ଭାବରେ ଉଦ୍‌ବୁଦ୍ଧ ହେଲେଣି ।

ଦୋଳ ପୂର୍ଣ୍ଣିମାର ପାଞ୍ଚ ଦିନକୁ ପଞ୍ଚୁଦୋଳ କୁହନ୍ତି । ଅନେକ ସ୍ଥାନରେ ଚୈତ୍ର କୃଷ୍ଣପକ୍ଷର ଦଶଦିନ ଯାଏଁ ଦୋଳଯାତ୍ରା ଚାଲେ ବୋଲି ସ୍ଥାନ ଭେଦରେ ଦି'ଦୋଳ, ତିନିଦୋଳ, .... ନଅ ଦୋଳ ଓ ଦଶଦୋଳ ଆକାରରେ ପାଳନ କରାଯାଏ ।

ଦୋଳ ଉତ୍ସବ ବା ହୋଲିରେ ବ୍ୟବହୃତ ରଙ୍ଗ ବିଜ୍ଞାନ ସମ୍ମତ ସ୍ୱାସ୍ଥ୍ୟ ପ୍ରଦାୟକ । ଏହା ଚର୍ମରୋଗ ନିବାରକ । ଏମିତି କି ହାଡ଼ଫୁଟି, ବସନ୍ତ, ମିଳିମିଳା ଓ କୁଣ୍ଡିଆ ଇତ୍ୟାଦିର ପ୍ରତିଷେଧକ । ସେମିତି ଦୋଳ ଭୋଗରେ ବ୍ୟବହୃତ ଚଣା କାମ ଉଦ୍ଦୀପନା ରୋଧକ । ମାତ୍ର ଆଧୁନିକ ମୁଣ୍ଡଫଟା ରଙ୍ଗ ଖେଳ ନିହାତି ଏକ ପ୍ରଦୂଷିତ ପରମ୍ପରା । ଏହାକୁ ରୋକାଯିବା ଉଚିତ ।

ଅଧ୍ୟକ୍ଷ
ଓଡ଼ିଶା ଭାଷା ସଂରକ୍ଷଣ ଏବଂ ଗବେଷଣା ପ୍ରତିଷ୍ଠାନ
ବିପିନ ବିହାରୀ ପାଠାଗାର, ଜଟଣୀ



# ବିଶ୍ୱ ସଂପ୍ରୀତି : କବି ଦୃଷ୍ଟି

ଡକ୍ଟର ବିରଞ୍ଚି କୁମାର ସାହୁ

କବି ଓ କବିତାକୁ ନେଇ ଆମ ସାହିତ୍ୟ ବେଶ୍ ପୁଷ୍ଟ ଓ ପୁଷ୍କଳ ମଧ୍ୟ । ତଥାପି କବିଟିଏ କ'ଣ କରେ ଏ ବିଶ୍ୱ ପାଇଁ, ଏ ସମାଜ ପାଇଁ ? ଉତ୍ତର- ଅନେକ କିଛି କରେ, କବିର ପରିଚୟ ତା'ର କବିତା । କବିତାକୁ ନେଇ ସେ ସାରାଜୀବନ ଯୁଝୁଥାଏ, ତାକୁ ଝୁରି ହେଉଥାଏ, ଆଉ ତା'ରି ଭିତରେ ସେ ବଞ୍ଚିରୁହେ ତମାମ୍ ଜୀବନ, ଏପରିକି ଜୀବନ ପରେ ମଧ୍ୟ । କେବଳ ଓଡିଆ ସାହିତ୍ୟ ନୁହେଁ, ପୃଥିବୀ ବା ବିଶ୍ୱ ସାହିତ୍ୟକୁ ଦେଖିଲେ ସୃଷ୍ଟିର ପ୍ରଥମ ପସନ୍ଦ ବୋଧେ କବିତା, ତାହା ଦୁଃଖରୁ ହେଉ ବା ସୁଖରୁ ହେଉ । ଏହି ଦୁଇ ଧାରା ମଧ୍ୟରୁ କବିତାର ଉଦ୍‌ଭବ । କବିତା ଓ କବି ପରସ୍ପର ପରିପୂରକ । ଜଣେ ଆଉ ଜଣକ ବିନା ଅପାଂକ୍ତେୟ । ଅନେକ କହନ୍ତି, ଦୁଃଖର ଆବର୍ତ୍ତରୁ କବିତାର ଅଙ୍କୁରୋଦ୍‌ଗମ ହୋଇଥାଏ । କବିତାର ବୀଜ ତା'ରି ଭିତରେ ହିଁ ନିହିତ ଥାଏ ।

'ମା ନିଷାଦ୍ ପ୍ରତିଷ୍ଠା ତ୍ୱମାଗମ ଶାଶ୍ୱତୀ ସମା
ଯତ୍ କ୍ରୌଞ୍ଚ ମିଥୁନାଦ୍ୱେକ ମବଧି କାମ ମୋହିତମ୍' ।।

ଶୋକଚ୍ଛ୍ୱାସ ହୃଦୟରୁ ଏହା ନିର୍ଗତ । କ୍ରୌଞ୍ଚ ପକ୍ଷୀଯୁଗଳ କାମାସକ୍ତ ଥିବା ସମୟରେ ବ୍ୟାଧର ଶର ଦ୍ୱାରା ମୃତ୍ୟୁ, କବିଙ୍କୁ ଯେଉଁ ଦୁଃଖ ଦେଇଥିଲା ସେଇଥିରୁ ହିଁ କବିତାର ଆଦ୍ୟ ଝଲକ ଉତୁରି ଆସିଥିଲା । ତେବେ କବି ପ୍ରଥମେ ମଣିଷଟିଏ । ତା' ଭିତରେ ସେ ଅନୁଭବ କରେ ହସ, କାନ୍ଦ, ଦୁଃଖ । ତାହା ଯେତେବେଳେ ଭିନ୍ନ ମୋଡନିଏ ସେତେବେଳେ ତାହା କବିତା ହୁଏ । ଜଣେ କବି କହିଥିଲେ, କବିତା ହେଉଛି 'spontaneous overflow of powerful feelings' । ଶବ୍ଦଗୁଡିକ ଆପେ ଆପେ ଝରି ଆସନ୍ତି ମୁକ୍ତାଭଳି । ତାହା ଯେତେବେଳେ ଶକ୍ତିଶାଳୀ ହୁଏ ସେତେବେଳେ ତାହା କବିତା ହୁଏ ଏବଂ ଏହି କବିତା କେବଳ ପଦ ସହିତ ପଦର ମିଳନ ନୁହେଁ । ତେବେ କବିତା କ'ଣ ? କବିତା ଭିତରେ ଥାଏ ଗୋଟାଏ ଭାବ, ଥାଏ ବିମୁଗ୍ଧ ବାଙ୍ମୟତା ।

କବିଟିଏ ଚିରକାଳ ଜଳୁଥାଏ ତା'ର ଚଉପାଶକୁ ନେଇ । ସେ ଚାହେଁ ତା'ର ଚତୁପାର୍ଶ୍ୱର କଥାକୁ କହିବ, ଯେଉଁ ମାଧ୍ୟମରେ ସେ ବଖାଣେ ନିଜକଥା, ଅନ୍ୟକଥା, ସମାଜର କଥା, ଦୁନିଆର କଥା, ଏପରିକି ତା'ର ଦୃଷ୍ଟିଭଂଗୀ ଚାଲିଯାଏ ବିଶ୍ୱ ପର୍ଯ୍ୟନ୍ତ । ସେଥିରେ ହୁଏତ ଖିଆଲି ପଣ ଥାଇପାରେ, ଚପଳତା ଥାଇପାରେ ମାତ୍ର ସବୁ ସମୟରେ ନୁହେଁ କିମ୍ବା ସବୁ କବିତାରେ ମଧ୍ୟ ନୁହେଁ । ଲେଖନୀ ତା'ର ଅସ୍ତ୍ର, ସେହି ଲେଖନୀ ସହାୟତାରେ ସେ ଯେତେବେଳେ ଭାବକୁ ପରଷି ନେଇଯାଏ, ତାହା ଅନ୍ୟମାନଙ୍କର ଦୃଷ୍ଟିକୁ ଆସେ ।

କୁହାଯାଏ, କବିଟିଏ କୁଆଡେ ଦ୍ୱିତୀୟ ଈଶ୍ୱର । ଈଶ୍ୱର ଏ ସୃଷ୍ଟିକୁ ସୃଜି ସାରିବାପରେ କବିଟିଏ ପୁଣି ଥରେ ସୃଜୁଥାଏ । ଈଶ୍ୱରଙ୍କ ସୃଷ୍ଟିକୁ ଠିକ୍ ଭାବେ ଆକଳନ କରିପାରେ ନାହିଁ ସାଧାରଣ ମଣିଷଟି, କବି କିନ୍ତୁ ତାକୁ ଚିହ୍ନି ଓ ଚିହ୍ନେଇ ଦିଏ । ଆମ ଆଖିରେ ଯାହା ଯାହା ଦିଶେ ଓ ଯେପରି ଦିଶେ ତାହା କିନ୍ତୁ କବି ଆଖିରେ ଅବିକଳ ଠିକ୍ ସେଇଆ ଦିଶେ ନାହିଁ । ତେଣୁ କବି ଟିକିଏ ଭିନ୍ନ- ସେ ସ୍ରଷ୍ଟା । 'କବି ଅନାହାରରେ ମଲେ ମଧ୍ୟ ଆମେ ଦେଖୁ ଯେ କବିତା ମରେନା । ବିଳାସପାଳିତ ସୁଖ ଜୀବିତ ରାଜା-ମହାରାଜା, ଧନୀ, ମନ୍ତ୍ରୀ, ବଣିକ, ରାଜକର୍ମଚାରୀ ମୃତ୍ୟୁର ପର ଦିବସଠାରୁ ଧରାପୃଷ୍ଠରୁ ନିଶ୍ଚିହ୍ନ ହୋଇଯାନ୍ତି, କିନ୍ତୁ ପ୍ରକୃତି ଓ ମାନବ ସମାଜର ଏକ ଅଦ୍ଭୁତ ଯୋଗ ବିଯୋଗ ଘଟିତ ନିୟମାନୁଯାୟୀ ଦରିଦ୍ର, ଲାଞ୍ଛିତ କବି ଯାହା ଦି'ପଦ ଲେଖିଯାଏ, ତାକୁ ସମ୍ରାଟମାନେ ନିଜର ବିରାଟ

ସୈନ୍ୟବାହିନୀ ଲଗାଇ ମଧ୍ୟ ମାରି ପାରନ୍ତି ନାହିଁ'। (ମାନସିଂ ଗ୍ରନ୍ଥାବଳୀ-୩ୟ ଖଣ୍ଡ-ପୃ ୨୬୫)

କବି ଶବ୍ଦର ତତ୍ତ୍ୱ ହେଉଛି ସର୍ବଜ୍ଞାନର ଉତ୍ସ ବା ଜ୍ଞାନବାନ୍। ଜ୍ଞାନଚକ୍ଷୁ ସଂପନ୍ନ ବ୍ୟକ୍ତି ଅର୍ଥାତ୍ ଦ୍ରଷ୍ଟା, ସେ ଦେଖେ, ଅତୀତକୁ ଓ ବର୍ତ୍ତମାନକୁ ମଧ୍ୟ ତା'ରି ଭିତରେ ଦେଖିନିଏ ସେ ଭବିଷ୍ୟତକୁ। କବି ଦ୍ୱିତୀୟ ପ୍ରଜାପତି। ବିଶ୍ୱପ୍ରତି ଦୃଷ୍ଟିପାତ କରିପାରେ କେବଳ କବିଟିଏ।

'ଅପାରେ କାବ୍ୟ ସଂସାରେ କବିରେବଃ ପ୍ରଜାପତିଃ।
ଯଥାସ୍ମୈରୋଚତେ ବିଶ୍ୱଂ ତଥେଦଂ ପରିବର୍ତ୍ତତେ'।।

କବିଟିଏ ସମର୍ପିତ ସାଧକ। ସେ ଚିରକାଳ ଜାଗ୍ରତ ଥାଏ, ଧ୍ୟାନସ୍ଥ ମୁଦ୍ରାରେ। ତା'ର ଧ୍ୟାନରୁ ବିଚ୍ଛୁରିତ ହୁଏ ପୁଷ୍ପର ମହକ, ସୂର୍ଯ୍ୟର ପ୍ରଭା, ଜହ୍ନର ଜ୍ୟୋସ୍ନା ଓ ଜଳର ମନ୍ଦାକିନୀ ଧାରା। ତା' ଭିତରେ ଗୋଟାଏ ସ୍ରଷ୍ଟାପଣ ସବୁବେଳେ କାମ କରୁଥାଏ। କବିର କବିତା ହେଉଛି ବନିତା। କବି ହେଉଛି ତା' ପିତା। ଯେମିତି

'କବିତା ବନିତା କବି ତା' ପିତା
କହିବା ଲୋକ ତା'ର ଉପମାତା' ॥

ବନିତାକୁ ଜନ୍ମନେଇ ଲାଳନପାଳନ କରି ତାକୁ ଯେମିତି ଅନ୍ୟଘରକୁ ପଠାଇ ଦିଆଯାଏ, ଠିକ୍ ସେମିତି କବିଟିଏ କବିତାକୁ ଜନ୍ମଦେଇ ସାରିଲାପରେ ସେ ତାକୁ ପାଠକଙ୍କ ହାତକୁ ଟେକିଦିଏ। ତା'ର ବୋଲି କହିବାକୁ ତା'ର ଆଉ ଯୁ' ନଥାଏ। କେବଳ କବିତା ଚାତୁରୀରେ ମନ ମୋହିବା କବିର ଧର୍ମ ନୁହେଁ। ସେ ଏ ସମାଜକୁ ଓ ଏ ବିଶ୍ୱକୁ ସଜାଡେ। ତା'ର ଗୋଟିଏ ଗୋଟିଏ ଶବ୍ଦରେ ଆକାଶରୁ ନିଆଁଝୁଲ ଖସିପଡେ। ଶୂନ୍ୟରେ ବନ୍ୟା ହୋଇପାରେ, ସହସ୍ର ମୁଣ୍ଡକୁ ସେ ଏକାବେଳକେ ଗଡାଇ ଦେଇପାରେ। ଯେଉଁଠି ଅନ୍ୟାୟ, ଅନୀତି ଏପରିକି ଅସହଣୀୟ କାର୍ଯ୍ୟ ହୋଇଛି, ତା'ର ଲେଖନୀ ସେଠି ବଜ୍ରଗମ୍ଭୀର ସ୍ୱର ଶୁଣାଇଛି।

ସତ୍ କବିଟିଏ ଚିରକାଳ ତପସ୍ୱୀ ଭଳି। ସେ ଉଦାର, ତା' ଭିତରେ ଥାଏ ମାନବିକତା। ସେ ଅନ୍ଧ ହେଉ କି କନ୍ଧ ହେଉ, ସେ ଦେଖିପାରେ ବିଶ୍ୱକୁ, ଠିକ୍ ମହାଭାରତର ସଂଜୟଙ୍କ ଭଳି, ଅନ୍ଧ ଧୃତରାଷ୍ଟ୍ରଙ୍କୁ ମହାଭାରତର ବିବରଣୀ ପ୍ରଦାନ କଲାଭଳି। ନିଜ ଜୀବନକୁ ନର୍କକୁ ଠେଲି ଦେବାକୁ ସେ ଭୁଲେ ନାହିଁ। ଜଗତଯାକର ପ୍ରାଣୀଏ କେମିତି ଭଲରେ ରହିବେ, ସେଇକଥା ତା'ରି ଭିତରେ ଗୁମୁରି ଉଠେ। ସେ କହେ -

'ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ
ଦେଖୁ ଦେଖୁ କେବା ସହୁ
ମୋ ଜୀବନ ପଛେ ନର୍କେ ପଡିଥାଉ
ଜଗତ ଉଦ୍ଧାର ହେଉ'।

ଜଗତକୁ କେବଳ, ବିଶ୍ୱକୁ କେବଳ କବିଟିଏ ଖୋଜେ ଓ ଲୋଡେ। ତା'ରି ଭିତରେ ବଞ୍ଚୁଥିବା ସକଳ ମଣିଷମାନଙ୍କୁ ସେ ଚିହ୍ନିଥାଏ। ସମସ୍ତଙ୍କର ଶ୍ରଦ୍ଧା ଓ କରୁଣା ଲାଭ କରୁଥାଏ। କେବେ କେବେ କବିଟିଏ କହିପାରେ -

'ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯା'ନ୍ତୁ ପିଠିରେ'।

ପୃଥିବୀ, ଆକାଶ, ନଦୀ, ହ୍ରଦ, ତାରା, ପାହାଡ, ଝରଣା, ପକ୍ଷୀର କାକଳି, ଫୁଲ, ଫଳ, ସୁଗନ୍ଧ, ସମୁଦ୍ର କାହିଁ କେଉଁ ଅଗନା ଅଗନି ବନସ୍ତ, ପିମ୍ପୁଡି ଭଳି କ୍ଷୁଦ୍ରାତିକ୍ଷୁଦ୍ର ଜୀବ ଏପରିକି ମାନବେତର ଚରିତ୍ର, ହାତୀ, ମଗର, ତିମି ଭଳି ବୃହତ୍ ଶରୀରଧାରୀ ଜୀବ ଯାଏଁ, କେତେ ଅଛୁଆଁ ମଣିଷ, ରଙ୍କଠାରୁ ରାଜା ଯାଏଁ, ଜାୟାଠାରୁ ଶବରୀ ଯାଏଁ, ରାମା ଭଣ୍ଡାରୀରୁ ରାମଚନ୍ଦ୍ରଙ୍କ ଯାଏଁ କୋଉ କଥା ନାହିଁ ଯେ ତାହା ବାଦ୍ ପଡିଯାଇଛି କବିର ଲେଖନୀରେ। ବିଶ୍ୱର କୋଣ ଅନୁକୋଣରେ କୋଉଠି କେତେବେଳେ କୋଉ ଘଟଣା ଘଟିଲା, ତାକୁ ନେଇ କବି ମଣିଷଟି କେତେ ଡହଳବିକଳ ନ ହୁଏ ସତେ ? ତା'ରି କଥାକୁ ତା'କୁ ହାଲ୍‌କା ଲାଗେ। କେତେକେତେ ପୁରାଣରୁ କଥା-ଉପକଥା ସଂଗ୍ରହ କରି ତା'ରି କବିତାରେ ସାଇତି ଯାଇଛି। ମହାଭାରତ, ରାମାୟଣ, ଭାଗବତ, ହରିବଂଶ ଆହୁରି କେତେ ପୁରାଣଠାରୁ ଆରମ୍ଭ କରି ସତ୍ୟ, ତ୍ରେତୟା, ଦ୍ୱାପର, କଳିର କେତେ ଯୁଦ୍ଧ, କେତେ ପ୍ରେମ, କେତେ ଘଟଣା, କେତେ ଚରିତ୍ର ସମସ୍ତେ କିନ୍ତୁ କବି ହାତରେ ଧରା ପଡିଯାଇଛନ୍ତି।

ସାରଳାଙ୍କଠାରୁ ସାଂପ୍ରତିକ ପର୍ଯ୍ୟନ୍ତ ଅଗଣନ କବିଙ୍କ ଲେଖାରେ ସାହିତ୍ୟର ଛାତି ପୂରି ଉଠିଛି। କବିଟିଏ ଚିରକାଳ ଜାଗ୍ରତ ପ୍ରହରୀ। ସେ କଞ୍ଚୁକୀ ସାଜି ଅତୀତର କଥାକୁ ରୋମନ୍ଥନ କଲାବେଳେ ଅନ୍ୟାୟ ଅନୀତି ପ୍ରତି ବ୍ୟଙ୍ଗ ବିଦ୍ରୂପ ମଧ୍ୟ କରିଥାଏ। ସବୁର କଥା ଓ ବ୍ୟଥାକୁ ସେ ଲିପିବଦ୍ଧ କରିଚାଲିଯାଏ। ତା'ର

ଡର ନଥାଏ କାହାକୁ । ମୁଣ୍ଡ ଗଡିଗଲେ ସୁଦ୍ଧା ସେ ପଛାଏ ନାହିଁ । ରାଜାଜ୍ଞାକୁ ନ ମାନି, ପୁରସ୍କାରକୁ ପ୍ରତ୍ୟାଖ୍ୟାନ କରି ରାଜ ରୋଷର ଶିକାର ହୋଇଥିଲେ ମଧ୍ୟଯୁଗୀୟ କବି ଦୀନକୃଷ୍ଣ, ପୁରୀରୁ ବିତାଡିତ କରାଗଲା । କୁଷ୍ଠ ବ୍ୟାଧିରେ ରୋଗାଗ୍ରସ୍ତ, ଜର୍ଜରିତ ଶରୀର । ତଥାପି ଲୋଭ ନାହିଁ । ନିର୍ଭୀକ କବି, ଜବାବ୍ ଦେଲେ - 'ତୁମ୍ଭକୁ ନାହିଁ ମୋର ଡର/ ମୋ ପ୍ରଭୁବଳେ ବଳୀୟାର' ସତ୍ କବିର ତାହାହିଁ ଲକ୍ଷଣ । ନିଜେ ଗରଳ ପିଇ ବିଶ୍ୱକୁ ରକ୍ଷା କରିବାର ମୋହ ତା' ଭିତରେ ଥାଏ । ତୋଷାମଦ, ଚାଟୁକୁ ସେ ପ୍ରତ୍ୟାଖ୍ୟାନ କରେ. ସେହି କବି ପୁଣି କହେ -

'ତୋଷାମଦିଆର କୁକୁର ପ୍ରକୃତି
ଅଇଁଠା ପତରେ ଧ୍ୟାନ' ।

କବିଟିଏ ସମର୍ପିତ ସାଧକ । ଚିରକାଳ ଜାଗ୍ରତ ଥାଏ । ସେ ଗାଏ ପ୍ରେମ, ପ୍ରଣୟ, ଶାନ୍ତି ଓ ମାନବିକତାର କ୍ରାନ୍ତି ଓ ମୁକ୍ତିର ଗୀତ । ତା'ର ଶବ୍ଦର ଗାଣ୍ଡିବରେ ଧରାଶାୟୀ ହୁଅନ୍ତି ଶତ ଶତ ଛଦ୍ମବେଶୀ ଖୋଳପାଧାରୀ ବ୍ୟକ୍ତି । ଜୀବନର ଯେଉଁ ମୁହୂର୍ତ୍ତଗୁଡିକ ତାକୁ ଆନ୍ଦୋଳିତ କରେ, ତାକୁ ହିଁ ଉପଜୀବୀ କହି ସେ ମଗ୍ନ ହୁଏ ତା'ର ସାଧନାରେ । ତା'ର ଭାବନା ଭୂମିଠାରୁ ଭୂମାଯାଏଁ ବିଶ୍ୱବ୍ୟାପୀ, ବିଶ୍ୱ ସଂପ୍ରୀତିରେ ପୂରିଉଠେ ।

'ଏ ନିଖିଳ ବିଶ୍ୱଆଦି ନିଜସ୍ୱ ମୋହର
ଏ ବିଚିତ୍ର ଏ ସୁକାନ୍ତ ଧରଣୀ ଅମ୍ବର' ।

ସୁନୀଳ ଆକାଶ, ନିଖିଳ ବିଶ୍ୱ ଓ ସୁକାନ୍ତ ଧରଣୀ ସବୁ ଯେପରିକି କବିର ନିଜ ସଂପଦ ହୋଇଉଠିଛି ଏକ ମହତ୍ତର ଉପଲବ୍ଧି ଓ ଅନୁଭବ ଭିତରେ । ବିଶ୍ୱ ପ୍ରକୃତିରେ ସ୍ରଷ୍ଟାଙ୍କ ସତ୍ତା ଉପଲବ୍ଧି କରି କବିଙ୍କ ଅନ୍ତର ମହୋଲ୍ଲାସରେ ଆନ୍ଦୋଳିତ । କବି ମଧୁସୂଦନ ରାଓ ବିଶ୍ୱର ପ୍ରତି ଛତ୍ରେ ଛତ୍ରେ ସେହି ମହତ୍ ସତ୍ତା (ଐଶ୍ୱରୀୟ ଉପଲବ୍ଧି)କୁ ଅନୁଭବ କରିଛନ୍ତି ଓ ସେହି ସତ୍ତା ସହ ନିଜକୁ ସମନ୍ୱିତ କରିନେଇଛନ୍ତି ।

'ଅଣୁରେ ଅଣୁରେ ନାଥ, ଏ ମହାବିଶ୍ୱର
ବାଜୁଅଛି ଅନାହତ ବୀଣା ବଂଶୀ ସ୍ୱର
ପ୍ରାଣେ ପ୍ରତିଧ୍ୱନି ତା'ର ଉଠୁଛି ସଞ୍ଚରି
ମୋହରି ମୋହରି, ତୁହି ମୋହରି ମୋହରି' ।

କବି ଗୋଦାବରୀଶ ମିଶ୍ରଙ୍କ 'ଫୁଲ' କବିତାରେ ବିଶ୍ୱର ଚିତ୍ର ସ୍ଥାନିତ ।

'ରହି ରହି ଫୁଲ ଆସଇ ଯାମିନୀ
ତୁରିତେ ଦିବସ ଯାଉଛି ସରି,
ଏ ବିଶ୍ୱରୁ ଘେନି ଅନନ୍ତ ମେଲାଣି
ସାଥି ହୋଇଯିବା ବେନିଏ ଚାଲି' ।

କବିଟିଏ ସ୍ୱପ୍ନାଳସୀଠାରୁ ନିଜକୁ ଦୂରେଇ ନେଇ ବାସ୍ତବ ଜୀବନକୁ ଫେରି ଆସିଲା ବେଳକୁ ନିଷ୍ଠୁର ବାସ୍ତବକୁ ସାମନା କରୁଛି । କବି ନିଜର ପ୍ରଣୟୀଠାରୁ ଦୂରରେ ଯାଇ ମାଟି ଓ ମଣିଷ ପାଖକୁ ଆସି ବିଶ୍ୱ ପ୍ରକୃତିର ମାୟା, ସ୍ୱଦେଶ ଓ ସ୍ୱଜନର ଆକର୍ଷଣ ତା'ର ନିଜର ହୋଇଯାଇଛି ।

'ଡାକେ ମୋତେ ବିଶ୍ୱର ଆକାଶ
ଡାକେ ମୋତେ ସ୍ୱଦେଶର ଧୂଳିକଣା,
ପୃଥିବୀର ପ୍ରତି ଗିରି, ନଦୀ ସୁଦୂର ବନପଥେ
ରବିଚନ୍ଦ୍ର ନିହାରିକା, ତାରକା ରୁଚିର' ।

ଏଥିରେ ସ୍ପଷ୍ଟ ହୋଇଛି ବିଶ୍ୱ ସଂପ୍ରୀତି ମାଧ୍ୟମରେ ପ୍ରକୃତି ପ୍ରାଣତା । କବି ଦୃଷ୍ଟିରେ ବିଶ୍ୱପ୍ରକୃତିର ବିଚିତ୍ର ରହସ୍ୟ ଧରା ଦେଇଛି, ସୃଷ୍ଟି ହୋଇଛି, ପ୍ରାଣପୂର୍ଣ୍ଣ କବିତାର ରସ ଗଂଗୋତ୍ରୀର ଧାରା, ପତ୍ରର ସବୁଜିମା, ପୁଷ୍ପର ସୁରଭି, ଅଗ୍ନିର ଦାହିକା ଶକ୍ତି, ପଥର ଛାତରୁ ନିଗିଡି ପଡୁଥିବା ଝରଣାର କୁଳୁକୁଳୁ ନାଦ, ଏସବୁରେ ରହିଛି କବିପଣ । ସେ କବିପଣ ବ୍ୟାପୀଯାଏ ଅନନ୍ତ । କବିଟିଏ ବଞ୍ଚିଥାଏ ସର୍ବକାଳୀକ ହୋଇ । କବି ଦୃଷ୍ଟିରେ ବିଶ୍ୱ ହେଉଛି ମଧୁମୟ । ଗଂଗାଧର ମେହେର ସେଥିପାଇଁ ଗାଇ ଉଠିଛନ୍ତି -

'ବିଶ୍ୱଦେଖ ମଧୁମୟରେ ଜୀବନ
ବିଶ୍ୱ ଦେଖ ମଧୁମୟ
ମଧୁର ଝରଣ କରିବ ହରଣ
ତୋ ପାପ ମରଣ ଭୟ' ।

ଏହାହିଁ ବିଶ୍ୱ ସଂପ୍ରୀତି - କବି ଦୃଷ୍ଟିରେ ।

ଅଧ୍ୟାପକ, ଓଡିଆ ବିଭାଗ
ଉଦୟନାଥ ସ୍ୱୟଂଶାସିତ ମହାବିଦ୍ୟାଳୟ
ଅଡଶପୁର, କଟକ-୭୫୪୦୧୧

# କୋକିଳ କଣ୍ଠି ନାରୀନେତ୍ରୀ ସରୋଜିନୀ ନାଇଡୁ

**ପଣ୍ଡିତ ତ୍ରିଲୋଚନ ମିଶ୍ର**

ଭାରତ ମୁକ୍ତି ସଂଗ୍ରାମର କୋକିଳ କଣ୍ଠି ନାରୀନେତ୍ରୀ ହେଉଛନ୍ତି ପ୍ରଥିତଯଶା ମା' ସରୋଜିନୀ ନାଇଡୁ । ଲାଲା ଲଜପତ୍ ରାୟ, ବାଲ ଗଙ୍ଗାଧର ତିଲକ, ଗୋପାଳକୃଷ୍ଣ ଗୋଖେଲ, ମହାମାନବ ମହାତ୍ମା ଗାନ୍ଧୀ ଥିଲେ ତାଙ୍କ ଜୀବନର



ପ୍ରମୁଖ ଆଦର୍ଶ । ହିନ୍ଦୀ, ବଙ୍ଗଳା, ଉର୍ଦ୍ଦୁ, ପାର୍ଶୀ, ତେଲୁଗୁ, ଇଂରାଜୀ, ଫ୍ରେଞ୍ଚ ଭଳି ୭ଟି ଭାଷାରେ ତାଙ୍କର ଗଭୀର ଜ୍ଞାନ ଥିଲା । ଏସବୁ ଭାଷାରେ ତାଙ୍କର ଅନେକ କାଳଜୟୀ ରଚନା ରହିଛି । ୧୯୨୫ କାନପୁର ଜାତୀୟ କଂଗ୍ରେସର ପ୍ରଥମ ମହିଳା ଅଧକ୍ଷା ହେବା ପୂର୍ବରୁ ସେ ଅନେକ ଦେଶାତ୍ମବୋଧ କବିତା, ଗୀତାଭିନୟ, ପ୍ରବନ୍ଧ ରଚନା କରି ଜନମାନସକୁ ଗାନ୍ଧୀ ସତ୍ୟାଗ୍ରହ ଆଡକୁ ଟାଣି ଆଣିବାକୁ ସକ୍ଷମ ହୋଇଥିଲେ । କାନପୁର କଂଗ୍ରେସ ଅଧିବେଶନ ପରିଚାଳନା ସମୟରେ ସେ ନିଜ କାଳଜୟୀ କବିତାଗୁଡିକୁ ମଧୁର କଣ୍ଠରେ ଗାଇ ସମସ୍ତଙ୍କ ପ୍ରଶଂସାଭାଜନ ହୋଇଥିଲେ । ସେଠାରେ ସର୍ବସମ୍ମତିକ୍ରମେ ମହାମାନବ ମହାତ୍ମା ଗାନ୍ଧୀ ତାଙ୍କୁ କୋକିଳ କଣ୍ଠି ସରୋଜିନୀ ନାମରେ ସମ୍ବୋଧନ କଲେ । ୧୯୪୨ 'ଭାରତ ଛାଡ' ଆନ୍ଦୋଳନରେ ପ୍ରମୁଖ ଭୂମିକା ନେଇ ସେ ଗାନ୍ଧୀଙ୍କ ସହ ୨୧ ମାସ ବନ୍ଦୀ ଜୀବନ ବିତାଇଥିଲେ । ୧୯୩୧ ଗୋଲ ଟେବୁଲ ବୈଠକରେ ସେ ବାପୁଙ୍କ ସାଥିରେ ଥିଲେ । ଭାରତ ସ୍ୱାଧୀନ ହେବା ପରେ ଉତ୍ତର ପ୍ରଦେଶର ତଥା ଦେଶର ପ୍ରଥମ ମହିଳା ରାଜ୍ୟପାଳ ପଦ ତାଙ୍କୁ ମିଳିଥିଲା । ତାଙ୍କ ସୁକନ୍ୟା ପଦ୍ମଜା ନାଇଡୁ ମଧ୍ୟ ପରେ ରାଜ୍ୟପାଳ ପଦ ପାଇଥିଲେ ।

ବହୁ ପ୍ରତିଭାର ଅଧିକାରିଣୀ ମା' ସରୋଜିନୀ ୧୮୭୯ ଫେବୃଆରୀ ୧୩ ତାରିଖ ଦିନ ହାଇଦରାବାଦ ସହରର ଶିକ୍ଷାବିତ୍ ଅଘୋରନାଥ ଚଟୋପାଧ୍ୟାୟ ଓ କବୟିତ୍ରୀ ବରଦା ସୁନ୍ଦରୀ ଦେବୀଙ୍କ କୋଳମଣ୍ଡନ କରିଥିଲେ । ଆଠ ଭାଇଭଉଣୀଙ୍କ ମଧ୍ୟରେ ସେ ଥିଲେ ଜ୍ୟେଷ୍ଠା । ମାତ୍ର ୧୨ବର୍ଷ ବୟସରେ ମାଡ୍ରାସ ବିଶ୍ୱବିଦ୍ୟାଳୟ ମାଟ୍ରିକ ଟପର ହୋଇ ସେ ସମସ୍ତଙ୍କ ଦୃଷ୍ଟିକୁ

ଆସିଲେ । ପିତା ଚାହୁଁଥିଲେ ସେ ଜଣେ ବୈଜ୍ଞାନିକ ବା ଗଣିତଜ୍ଞ ହୁଅନ୍ତୁ । ମାତ୍ର ତାଙ୍କର ସାହିତ୍ୟରେ ଅସମ୍ଭବ ରୁଚି ଥିଲା । ତାଙ୍କ ପଥମ ନାଟକ 'ମେହେର ମୁନୀର' ପାଠ କରି ହାଇଦରାବାଦ ନିଜାମ ଖୁସି ହୋଇ ତାଙ୍କୁ ଅଧିକ ପାଠ ପଢ଼ିବା ପାଇଁ ଲଣ୍ଡନ ପଠାଇଲେ । ମାତ୍ର ୧୬ ବର୍ଷ ବୟସରେ ସେ ଲଣ୍ଡନର କିଙ୍ଗ୍ସ କଲେଜ, ପରେ ପରେ ଗିରଟନ କଲେଜ, କେମ୍ବ୍ରିଜରେ କୃତିତ୍ୱ ଦେଖାଇଲେ । ସେଠାରେ ତାଙ୍କ କବିତା ଦି ବାର୍ଡ ଅଫ୍ ଟାଇମ୍, ଦି ଗୋଲଡେନ୍ ଥେସ୍ ହୋଲ୍ଡ, ଦି ବ୍ରୋକନ ୱିଙ୍ଗ, ଫିଷ୍ଟ ଅଫ୍ ୟୁଥ, ଦି ମ୍ୟାଜିକ୍ ଟ୍ରି ଦେଶ ବିଦେଶ ପାଠକଙ୍କୁ ବାନ୍ଧି ରଖିଥିଲା । କବିଗୁରୁ ରବୀନ୍ଦ୍ର ନାଥ ଠାକୁର, ଋଷିପ୍ରାଣ ଅରବିନ୍ଦ, ପଣ୍ଡିତ ଜବାହରଲାଲ ନେହେରୁଙ୍କ ଭଳି ଅନେକ ଜନନାୟକ ସରୋଜିନୀଙ୍କ ଉଚ୍ଚ ପ୍ରଶଂସା କରିବାକୁ ଲାଗିଲେ । ଲଣ୍ଡନ ରହଣି ସମୟରେ ଭାରତୀୟ ଡାକ୍ତର ଗୋବିନ୍ଦରାଜୁଲୁ ନାଇଡୁଙ୍କୁ ବିବାହ କରି ସେ ସରୋଜିନୀ ନାଇଡୁ ହୋଇଗଲେ ।

ବିବାହ ପରେ ଭାରତକୁ ଫେରି ସେ ପ୍ରଥମେ ଗାନ୍ଧିଜୀଙ୍କୁ ସାକ୍ଷାତ କଲେ । ତାଙ୍କ ଉପଦେଶ ମାନି ନିଜ ପ୍ରତିଭାକୁ ସେ ମୁକ୍ତି ସଂଗ୍ରାମରେ ଲଗାଇ ଦେଲେ । ଗାନ୍ଧୀଙ୍କ ଉପଦେଶ ଥିଲା ଭାରତର ଆତ୍ମା ଗାଁରେ ଅଛି । ଗ୍ରାମବାସୀଙ୍କୁ ମୁକ୍ତି ସଂଗ୍ରାମ ସତ୍ୟାଗ୍ରହୀ କରାଅ । ସରୋଜିନୀ ନାଇଡୁଙ୍କ ଆବେଗଭରା ଭାଷଣ ଶ୍ରବଣରେ ଅଗଣିତ ସତ୍ୟାଗ୍ରହୀ ସୃଷ୍ଟି ହୋଇଗଲେ । ଘର କୋଣରେ ରହୁଥିବା ନାରୀମାନେ ସତ୍ୟାଗ୍ରହର ଆଗଧାଡ଼ିକୁ ଚାଲି ଆସିଲେ । ତାଙ୍କର ଏକାନ୍ତ ଅନୁଗାମୀଙ୍କ ମଧ୍ୟରେ ଦୁଇଜଣ ଓଡ଼ିଆ ରମଣୀ ଥିଲେ । ସେମାନେ ହେଲେ ଯଶସ୍ୱୀ ସାଧୀନତା ସଂଗ୍ରାମୀ ମା' ପାର୍ବତୀ ଗିରି ଓ ପ୍ରାଚୀତଟ ଐତିହ୍ୟଭରା ଗ୍ରାମ ତୁଳସୀପୁରର ମା' ଇନ୍ଦୁମତୀ ଦେବୀ । ଶେଷରେ ଆଜୀବନ ସଂଗ୍ରାମ କରି, ଦେଶସେବାରେ ଜୀବନ ବିତାଇ ମା' ସରୋଜିନୀ ନାଇଡୁ ୧୯୪୯ ମାର୍ଚ୍ଚ ୨ ତାରିଖରେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ତାଙ୍କ ଅନ୍ତିମ ଇଚ୍ଛାକୁ ସମ୍ମାନ ଜଣାଇ ମା' ପାର୍ବତୀ ଗିରି ତାଙ୍କର ପ୍ରଥମ ଶବଧାର ବାହାକ ହୋଇଥିଲେ । ଏହା ପ୍ରତ୍ୟେକ ଓଡ଼ିଆଙ୍କ ପାଇଁ କମ୍ ଗର୍ବ ଓ ଗୌରବର କଥା ନୁହେଁ । ସେ ଥିଲେ ଆମ ନାରୀ ଜାତିର ପ୍ରେରଣାର ଉତ୍ସ ।

ଆବାହକ, ସ୍ୱାଧୀନତା ସଂଗ୍ରାମୀ
ସହିଦ୍ ସ୍ମୃତି ସଂସଦ ଓଡ଼ିଶା
କାକଟପୁର, ପୁରୀ



# ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଓ ମଧୁବାବୁ

ରାମ ଚନ୍ଦ୍ର ଦାଶ

ଷୋଡଶ ଶତାବ୍ଦୀର ମଧ୍ୟ ଭାଗରେ ଓଡ଼ିଶାର ରାଜନୈତିକ ସାମ୍ରାଜ୍ୟର ଗୌରବ ରବି ଅସ୍ତମିତ ହେବା ପୂର୍ବରୁ ଓଡ଼ିଶାର ସୀମା ଉତ୍ତରରେ ବଙ୍ଗ, ଦକ୍ଷିଣରେ ତେଲେଙ୍ଗାନା ଓ କର୍ଣ୍ଣାଟକ ପ୍ରଦେଶର କେତେକ ଅଞ୍ଚଳକୁ ନେଇ ପରିବ୍ୟାପ୍ତି ଥିଲା । ପର୍ଯ୍ୟାୟକ୍ରମେ ଆଫଗାନ, ମୋଗଲ, ମରାଠାଙ୍କ ଆକ୍ରମଣ ସହିତ ଅନ୍ତଃକନ୍ଦଳରେ ସୂତ୍ରପାତ ଓ ଭ୍ରାତୃବିବାଦରେ ଓଡ଼ିଶାବାସୀ ଅତିଷ୍ଠ ହୋଇ ଚରମ ସୋପାନରେ ପହଞ୍ଚି ଯାଇଥିଲେ । ଏସବୁ ଥିଲା ପଲାସୀ ଯୁଦ୍ଧରେ ଇଷ୍ଟଇଣ୍ଡିଆ କମ୍ପାନୀ ବଙ୍ଗ ଅଧିକାର କରିବା ପରର ଘଟଣା । କେବଳ ବଙ୍ଗ କାହିଁକି ସାରା ଭାରତର ଭାଗ୍ୟ ମଧ୍ୟ ସେହିଠାରେ ସୀମାସିଂତ ହେଲା । ପରେ କଲିକତାର ଫୋର୍ଟ ଉଇଲିୟମ ହେଲା ଓଡ଼ିଶା ଶାସନର କେନ୍ଦ୍ରସ୍ଥଳୀ । ଶତାବ୍ଦୀ ପରେ ଶତାବ୍ଦୀ ମୋଗଲ ମରାଠାମାନଙ୍କ ଶୋଷଣ କଷଣ ଲୁଣ୍ଠନରେ ଓଡ଼ିଶା ଅତିଷ୍ଠ ହୋଇପଡିଥିଲା । ଓଡ଼ିଶା କମ୍ପାନୀ ଶାସନ ଆରମ୍ଭରେ ଖଣ୍ଡବିଖଣ୍ଡିତ ହୋଇ ବଙ୍ଗଳା, ମଧ୍ୟପ୍ରଦେଶ, ମାନ୍ଦ୍ରାଜ ଆଦି ଯେଉଁ ପ୍ରଦେଶଗୁଡିକୁ ବ୍ରିଟିଶ୍‌ମାନେ ଆଦରି ନେଇଥିଲେ, ସେମାନଙ୍କ ସହ ସାମିଲ୍ ହୋଇଯାଇଥିଲେ । ଫଳରେ ପରସ୍ପରଠାରୁ ବିଚ୍ଛିନ୍ନ ତିନୋଟି ଅଲଗା ଅଲଗା ଶାସନାଧୀନରେ ସଂଖ୍ୟାଲଘୁ ଭାଷାଭାଷୀ ଓ ଇତର ସଂସ୍କୃତି ଲୋକଙ୍କ ପରି ଓଡ଼ିଆଙ୍କୁ ରହିବାକୁ ପଡିଥିଲା । ଓଡ଼ିଶାକୁ କମ୍ପାନୀ ଶାସନର କିଛି ବର୍ଷ ମଧ୍ୟରେ ଦୁଇ ତୃତୀୟାଂଶ ଜମିଦାରୀ ଓଡ଼ିଶା ବାହାର ଲୋକଙ୍କ ହାତକୁ ଚାଲିଗଲା । ଓଡ଼ିଶା ଗୌରବର ମେରୁଦଣ୍ଡ ଭାଙ୍ଗିଗଲା । ପାଇକମାନଙ୍କ ପୂର୍ବରୁ ପ୍ରଭୁତ୍ୱ ଓ ପ୍ରତିପତ୍ତି ହ୍ରାସ ପାଇଲା । ଦିର୍ଘଦିନ ଧରି ଏଭଳି ଅସହ୍ୟ ପରିବେଶକୁ ବରଦାସ୍ତ କରିନପାରି ପାଇକମାନେ କମ୍ପାନୀ ଶାସନ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିବା ସହିତ ପୁରୀ ସହରକୁ ଦଖଲ କରିନେଲେ । ବ୍ରିଟିଶ୍ ଶାସନ ବିରୁଦ୍ଧରେ ପ୍ରଥମ ପ୍ରତିବାଦର ସଂଗ୍ରାମ ଥିଲା ଏହି ପାଇକ ବିଦ୍ରୋହ । କମ୍ପାନୀ ଶାସନର ସାମରିକ ଶକ୍ତି ବଳରେ ଏହି ବିଦ୍ରୋହ ଦବି ଯାଇଥିଲେ ବି ବେଳେବେଳେ ବିଦ୍ରୋହ ମୁଣ୍ଡ ଟେକୁଥିଲା । ଭାଷାଗତ ଦୃଷ୍ଟିରୁ, ବିଖଣ୍ଡିତ ଆର୍ଥିକ ଦୃଷ୍ଟିରୁ



ସଂକଟିତ ଓ ସାଂସ୍କୃତିକ ମ୍ରିୟମାଣ ଓଡ଼ିଶା କମ୍ପାନୀ ସରକାରଙ୍କୁ ବିରୋଧ କରିବାରୁ ଅକଥନୀୟ ଅତ୍ୟାଚାର ସହିବା ସହିତ ପରିଣାମରେ ବଙ୍ଗଳା ପ୍ରେସିଡେନ୍ସିର ଉପନିବେଶରୂପେ ରହିଥିଲା । ୧୮୬୬ ମସିହା ନଅଙ୍କ ଦୁର୍ଭିକ୍ଷ ବେଳେ ଓଡ଼ିଶାର ଅଭାବ ଅସୁବିଧା ଦେଖିବାକୁ ମିଳିଲା । ଏତେଦିନେ ବ୍ରିଟିଶ ଶାସନର ଚେତା ପଶିଲା । ଦୁର୍ଭିକ୍ଷ ପରେ ଭାରତ ସରକାର ଏ ବିଷୟରେ ସ୍ୱତନ୍ତ୍ର କରି ଜାଣିଲେ ଓଡ଼ିଶାକୁ ଖଣ୍ଡଖଣ୍ଡ କରି ଶାସନ କରିବା ଫଳରେ, ଏଭଳି ଦୁର୍ଭିକ୍ଷ ସଂଗଠିତ ହୋଇ ଅସଂଖ୍ୟ ଲୋକଙ୍କ ପ୍ରାଣହାନି ଘଟିଲା । ଏହାର ପ୍ରତିକାର ନିମନ୍ତେ ଓଡ଼ିଶାକୁ ବଙ୍ଗଳାରୁ ଅଲଗା କରି ସମଗ୍ର ଭାଷାଭାଷୀ ଅଂଚଳକୁ ଏକ ସ୍ୱତନ୍ତ୍ର ପ୍ରଦେଶ ଶାସନାଧୀନ କରି ରଖିବାକୁ ବ୍ରିଟିଶ୍ ସରକାରଙ୍କ ଦୃଷ୍ଟି ଆକର୍ଷଣ କରି ଶାସନର ଦୋଷତ୍ରୁଟି ସମ୍ପର୍କରେ ଚେତାଇଦେବା ସହିତ ସୁପାରିଶ କରିଥିଲେ ତତ୍କାଳୀନ ସେକ୍ରେଟାରୀ ଅଫ୍ ଷ୍ଟେଟ୍ ଫର୍ ଇଣ୍ଡିଆ ସାର୍ ଷ୍ଟାଫୋର୍ଡ ନର୍ଥକୋଟ୍ । ଏହି ସୁପାରିଶର ସୁଯୋଗ ଦାବି ନେଇ ସେତେବେଳେ କୌଣସି ସଂସ୍ଥା କି ରାଜନୈତିକ ଦଳ ନ ଥିବା ଯୋଗୁଁ ଏହା କେବଳ କାଗଜରେ ସେପରି ରହିଯାଇଥିଲା । ଓଡ଼ିଶା ବାହାରେ ଯେଉଁ ସୁବିଧାବାଦୀ ଗୋଷ୍ଠୀ ଓଡ଼ିଶା ଶାସନ କଳକୁ କବ୍‌ଜା କରି ସବୁ ପ୍ରକାର ସୁଖ ସ୍ୱାଛନ୍ଦ୍ୟ ନେଇ ଚାଲିଥିଲେ ସେମାନେ ସେମାନଙ୍କ ସ୍ୱାର୍ଥହାନି ଦେଖି ଉକ୍ତ ସୁପାରିଶକୁ ଭଣ୍ଡୁର କରିବାକୁ ଚକ୍ରାନ୍ତ କରି ବସିଲେ । ଓଡ଼ିଆ ଭାଷା ବଙ୍ଗଳାଠୁ ଅଲଗା ନୁହେଁ କି ସ୍ୱତନ୍ତ୍ର ଭାଷା ନୁହେଁ ବୋଲି ନାରା ଉଠାଇ ବଙ୍ଗଳା ସରକାରଙ୍କ ଶିକ୍ଷାଦପ୍ତର ଓଡ଼ିଶା ଡିଭିଜନର ସବୁ ସ୍କୁଲରୁ ଓଡ଼ିଶା ଭାଷା ଉଠାଇବାକୁ ଚେଷ୍ଟା କଲେ । ଏଣୁ ଏଥିପାଇଁ ଜନ୍ ବିମ୍‌ସ ସାହେବ ସ୍ପଷ୍ଟ ଭାବରେ ଓଡ଼ିଆ ଭାଷା ଅନ୍ୟାନ୍ୟ ଭାରତୀୟ ଭାଷାଠାରୁ ଅଧିକ ପୁରାତନ ଓ ପ୍ରତିଷ୍ଠିତ ବୋଲି କହିଲେ । ପ୍ରକୃତରେ ବି ଓଡ଼ିଆମାନେ ଓଡ଼ିଆ ଭାଷାକୁ ନେଇ ଗର୍ବ କରୁଥିଲେ । ଏଭଳି ଅବସ୍ଥାରେ ଓଡ଼ିଆ ଭାଷା ରକ୍ଷା ଆନ୍ଦୋଳନକୁ ଚଳାଇବାକୁ ଓଡ଼ିଶାର ସମୂହ ଜନତା ଅତୀତରୁ ସମସ୍ତ ଜଡତା ପରିହାର କରି ଏକ ମନ ଓ ଏକ ପ୍ରାଣରେ ମାତି ଉଠିଥିଲେ । ଦୀର୍ଘଦିନର ଭାଷା ଆନ୍ଦୋଳନ ପରେ ଓଡ଼ିଆ ଭାଷାର ବିଜୟ ହେଲା । ଓଡ଼ିଆ ଭାଷାଭାଷୀ ଅଂଚଳକୁ ଏକ ଶାସନାଧୀନ କରି ରଖିବା ଲାଗି ପୂର୍ବରୁ ଯେଉଁ ଉଦ୍ୟମ ମୁଣ୍ଡ ଟେକିଥିଲା, ତାହା ସମୟକ୍ରମେ ଅଧିକ ସକ୍ରିୟ ହୋଇଉଠିଲା । ଏଭଳି ଏକ ପରିବେଶ ଓ ପରିସ୍ଥିତିରେ ଏହି ନିଷ୍ପ୍ରାଣ ଓଡ଼ିଆ ଜାତିକୁ ଏକ ଦୃଢ ଶକ୍ତି ଆଉ ଅସରନ୍ତି ଧୈର୍ଯ୍ୟ ଦେବାକୁ ଆଗେଇ ଆସିଲେ କୁଳବୃଦ୍ଧ ମଧୁସୂଦନ । ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକ ଶାସନାଧୀନ କରି ଓଡ଼ିଶାବାସୀଙ୍କ ଲାଗି ସ୍ୱତନ୍ତ୍ର ପ୍ରଦେଶ ଗଠନର ସମ୍ଭାବନାକୁ ବାସ୍ତବତାର ରୂପ ଦେବା ଲାଗି ଅନେକ କିଛି ଉଦ୍ୟମର ଆବଶ୍ୟକକୁ ବିଚାର କରି ସେହି ସମୟରେ ମଧୁବାବୁ ଓଡ଼ିଶାରେ ଏକ ଅନୁଷ୍ଠାନ 'ଉତ୍କଳସଭା ବା ଓଡ଼ିଶା ଆସୋସିଏସନ୍' ଗଠନ କରିଥିଲେ । ସେତେବେଳେ ଏହାର କାର୍ଯ୍ୟ ପରିସର ସେତେଟା ପରିବ୍ୟାପ୍ତ ନହୋଇ କେବଳ କଟକ ଜିଲ୍ଲାରେ କାର୍ଯ୍ୟ କରୁଥିଲା । ୧୯୦୩ ମସିହା ଡିସେମ୍ବର ୩୦ ଓ ୩୧ ତାରିଖରେ ଦୁଇଦିନ ଧରି କଟକଠାରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ବସିଲା । ସେଥିରେ ସାରା ଓଡ଼ିଶାର ରାଜାରାଜୁଡାଠୁ ଆରମ୍ଭ କରି ଓଡ଼ିଶା ବାହାରେ ଥିବା ଓଡ଼ିଆ ଲୋକମାନେ ବିପୁଳ ସଂଖ୍ୟାରେ ଯୋଗଦେଲେ । ସେଠାରେ ଓଡ଼ିଆ ଭାଷାଭାଷୀ ବିଛିନ୍ନାଞ୍ଚଳଗୁଡ଼ିକ ଏକତ୍ରୀକରଣ ନିମନ୍ତେ ନାନାକଥା ଆଲୋଚନା କରାଯାଇଥିଲା । ୧୯୨୦ ମସିହାରେ ଗାନ୍ଧିଜୀଙ୍କ ଆହ୍ୱାନ କ୍ରମେ ଅସହଯୋଗ ଆନ୍ଦୋଳନକୁ କର୍ମସୂତ୍ର ଭାବେ ଉତ୍କଳ ସମ୍ମିଳନୀ ଗ୍ରହଣ କରି ଭାରତୀୟ ଜାତୀୟ ସ୍ରୋତରେ ତା'ର ସ୍ୱତନ୍ତ୍ର ଶୋଭା ବଜାୟ ରଖିଲା । ଏହା ମୁଖ୍ୟତଃ ଜାତି ବର୍ଣ୍ଣ ଭାଷା ଅଞ୍ଚଳ ନିର୍ବିଶେଷରେ ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକ ଶାସନାଧୀନ କରିବାର ମହାସଭା ଥିଲା । କେବଳ ସ୍ୱତନ୍ତ୍ର ପ୍ରଦେଶ ନୁହେଁ ଉତ୍କଳ ସମ୍ମିଳନୀ ମଧ୍ୟ ଓଡ଼ିଶାରେ ବ୍ୟବସାୟିକ ଶିକ୍ଷାର ପ୍ରସାର ଓ ସର୍ବୋପରି ଓଡ଼ିଶାର ସାଂସ୍କୃତିକ ଓ ରାଜନୈତିକ ଜାଗରଣ ଆଣିବାରେ କାର୍ଯ୍ୟ କରୁଥିଲା । ଉତ୍କଳ ସମ୍ମିଳନୀ ତା'ର କାର୍ଯ୍ୟକଳାପ ନେଇ ଓଡ଼ିଆଙ୍କ ହୃଦୟରେ ଏକ ସ୍ୱତନ୍ତ୍ର ଆସନ ଅଧିକାର କରି ବସିଲା । ଓଡ଼ିଶାର ଓଡ଼ିଆମାନେ ଆଗ୍ରହ ସହକାରେ ଏହି ସମ୍ମିଳନୀରେ ଯୋଗ ଦେଉଥିଲେ । ଏହି କାର୍ଯ୍ୟ ନିମନ୍ତେ ମଧୁବାବୁ ବ୍ୟକ୍ତିଗତଭାବେ ମଧ୍ୟ ଋଣ କରୁଥିଲେ । ସେଥିପାଇଁ ତାଙ୍କୁ ଶେଷ ଜୀବନରେ ମଧ୍ୟ ଦେବାଳିଆ ହେବାକୁ ପଡିଥିଲା । ଉତ୍କଳ ସମ୍ମିଳନୀ ଦ୍ୱାରା କେବଳ ମଧୁବାବୁ ସ୍ୱତନ୍ତ୍ର ପ୍ରଦେଶ ଗଠନ ଚାହିଁନଥିଲେ । ପ୍ରଦେଶଟିକୁ ମଧ୍ୟ ସମସ୍ତ ପ୍ରକାର

ଅନ୍ୟାୟ ଓ ଲୁଣ୍ଠନରୁ ମୁକ୍ତି କରାଇ ତାହାର ଅଧିବାସୀଙ୍କୁ ସ୍ୱାଧୀନ ଜୀବନଯାପନ କରିବାକୁ ଉଦ୍ୟମ କରିଥିଲେ । ମଧୁବାବୁଙ୍କ ଏସବୁ ଲକ୍ଷ୍ୟ ସଫଳ ହୋଇଥିଲା ଯେଉଁ ମହତ ଲକ୍ଷ୍ୟ ନେଇ, ସେଥିରେ ତାଙ୍କର ମହନୀୟତା ଓ ଉଚ୍ଚାକାଂକ୍ଷା ଦେଖିବାକୁ ମିଳେ । ନିଜର ନିଃସ୍ୱାର୍ଥପର କାର୍ଯ୍ୟ ନିମନ୍ତେ ମଧୁବାବୁ ସବୁ ଶ୍ରେଣୀର ଓଡ଼ିଆଙ୍କ ଶ୍ରଦ୍ଧା ସମ୍ମାନର ଆସନରେ ଅଧିଷ୍ଠିତ ହୋଇପାରିଥିଲେ । ବ୍ୟକ୍ତିଗତ ଓ ସାମୂହିକ ସମାଜର ପରିସରରେ ବହୁ ଦାରୁଣ ବିପର୍ଯ୍ୟୟ ଓ ଦୁଃଖ ଦୁର୍ଦ୍ଦଶାକୁ ସେ ସାହସ ଓ ଧୈର୍ଯ୍ୟର ସହ ମୁକାବିଲା କରିବାରେ ଯେଉଁ ସାମର୍ଥ୍ୟ ପ୍ରଦର୍ଶନ କରିଥିଲେ, ତାହା ଭାଷାରେ ବର୍ଣ୍ଣନା କରାଯାଇନପାରେ । ଜୀବନର ଅନ୍ତିମ ମୁହୂର୍ତ୍ତ ନିକଟତର ହେବା ଜାଣି ଓଡ଼ିଶା ବିଷୟ ବୁଝିବାକୁ ଓ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଦାୟିତ୍ୱ ବହନ କରିବାକୁ ସ୍ୱତନ୍ତ୍ର ଉତ୍ତରାଧିକାରୀଭାବେ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କୁ ମଧୁବାବୁ ମନେମନେ ସ୍ଥିର କରି ନେଇଥିଲେ । କିନ୍ତୁ ସେତେବେଳକୁ ଗୋପବନ୍ଧୁଙ୍କ ମୃତ୍ୟୁ ହୋଇ ସାରିଥିଲା । ତେଣୁ ମଧୁବାବୁ ଓଡ଼ିଶାର ପଣ୍ଡିତ ନୀଳକଣ୍ଠ ଦାସଙ୍କ ଉପରେ ଏହି ଦାୟିତ୍ୱ ନ୍ୟସ୍ତ କରିଥିଲେ । ମଧୁବାବୁ ନିଜେ ଯେଉଁ ସତ୍ୟବାଦୀ ଗୋଷ୍ଠୀ ଗଠନ କରିଥିଲେ, ପଣ୍ଡିତ ନୀଳକଣ୍ଠ ଦାସ ସେହି ଗୋଷ୍ଠୀର ମୁଖ୍ୟ ଥିଲେ । ପଣ୍ଡିତ ନୀଳକଣ୍ଠ ମଧୁବାବୁଙ୍କ ସଂକଟାପନ୍ନ ଅବସ୍ଥା ବିଷୟ ଶୁଣି ଶେଷ ଦର୍ଶନ ପାଇଁ କଟକ ଫେରି ଆସିଥିଲେ । ଶେଷରେ ୧୯୩୪ ମସିହା ଫେବୃଆରୀ ୪ ତାରିଖରେ ମଧୁବାବୁଙ୍କର ମୃତ୍ୟୁ ହୋଇଥିଲା । ଓଡ଼ିଶାକୁ ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ କରିବାକୁ ମଧୁବାବୁ ଜୀବନସାରା ଲାଗି ପଡିଥିଲେ ବି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ୧୯୩୬ ମସିହା ଅପ୍ରେଲ ୧ ତାରିଖକୁ ନିଜ ଆଖିରେ ଦେଖି ପାରିନଥିଲେ ।

ସାରସ୍ୱତ ଭବନ
ଅକରପଡା, ମାହାଙ୍ଗା, କଟକ



# ଆତ୍ମକଲ୍ୟାଣର ବାର୍ତ୍ତାବହ : ମହାଶିବରାତ୍ରି

**ଡକ୍ଟର ଶରତ ଚନ୍ଦ୍ର ପରିଡ଼ା**

ମହା ଶିବରାତ୍ରି ଏକ ସାର୍ବଜନୀନ ପର୍ବ । ଫାଲଗୁନ ମାସର କୃଷ୍ଣ ପକ୍ଷ ଚତୁର୍ଦ୍ଦଶୀ ତିଥିର ଘୋର ଅନ୍ଧାର ରାତିରେ ସଦାଶିବ ଧରାବରଣ କରିଥିଲେ । ସେହି ଜନ୍ମରାତ୍ରି ଶିବଙ୍କ ଉପାସନା ପାଇଁ ପ୍ରସିଦ୍ଧ । ବୈଷ୍ଣବ, ଶାକ୍ତ, ସୌର, ବୌଦ୍ଧ ଓ ଗାଣପତ୍ୟ ସମ୍ପ୍ରଦାୟ ପରି ଶୈବ ସମ୍ପ୍ରଦାୟରେ ଏହା ପ୍ରତିଷ୍ଠିତ । ଶିବଙ୍କ ମହିମା ଚାଣ୍ଡାଳ, ବ୍ରାହ୍ମଣ, ଶୂଦ୍ର ଓ ବୈଶ୍ୟ ସମସ୍ତେ ଅବଗତ । ସମସ୍ତେ ତାଙ୍କର ଉପାସକ । ଶିବଙ୍କୁ ଜାଣିବା ଅର୍ଥ ଶିବଙ୍କ ସହ ଆତ୍ମ ସାକ୍ଷାତ୍କାର ସହ ସମାନ । ଶୈବ ଦର୍ଶନ ହେଉଛି ବେଦାନ୍ତର ଶ୍ରେଷ୍ଠ ଦର୍ଶନ । ପରମାତ୍ମା ପରମେଶ୍ୱର ପରଂବ୍ରହ୍ମ ଅରୂପ । ଅନାମ । ନିଷ୍କଳ । ନିରାକାର । ନିରଞ୍ଜନ । ତାଙ୍କୁ ସାଧାରଣ ବୋଧରେ ଆଣିବା କଷ୍ଟସାଧ୍ୟ । ତାଙ୍କୁ ଅବଧାରଣ କରିବା ନିମନ୍ତେ ରୂପର କଳ୍ପନା କରାଯାଇଛି । ନାନାରୂପ ଓ ଆୟୁଧରେ ସଜାଇ ଦିଆଯାଇଛି । ଶିବପୁରାଣ ଅନୁଯାୟୀ ଶିବ ହେଉଛନ୍ତି ପ୍ରକୃତି ଓ ପୁରୁଷର ଉର୍ଦ୍ଧ୍ୱରେ । ସେ ମହେଶ୍ୱର, ସେ ମଙ୍ଗଳକର୍ତ୍ତା ଏବଂ ସମସ୍ତ ପ୍ରାଣୀଙ୍କର ସର୍ବକୁଶଳର କାରଣ । ଅନନ୍ତ ଶିବତ୍ୱର ପ୍ରତୀକ ତ୍ରିଦେବ । ଏମାନଙ୍କ ମଧ୍ୟରୁ ମହେଶ୍ୱର ଶିବ ରୂପେ ଅଭିହିତ ।



**ସଙ୍କେତ ଦ୍ୱାରା ସତ୍ୟର ଦ୍ୱାର ଉନ୍ମୁକ୍ତ ହୋଇଥାଏ:** ମୁନିରଷିଙ୍କ ହୃଦୟରେ ନିର୍ଗୁଣ ଦେବଦେବୀଙ୍କ ରୂପ କଳ୍ପିତ ହୋଇଛି ଓ ଆୟୁଧ ସଂଯୋଜିତ ହୋଇଛି । ଭାରତୀୟ ସଭ୍ୟତାର ନାନା ସଙ୍କେତ ମାଧ୍ୟମରେ ସେହି ରୂପ ଆୟୁଧରେ ଅନ୍ତର୍ନିହିତ ଚିରନ୍ତନ ସତ୍ୟ ଆତ୍ମପ୍ରକାଶ କରିଥାଏ । ସଙ୍କେତ ଜ୍ଞାନ ରାଇଜକୁ ବାଟ ଦେଖାଏ । ଯାହାକୁ ଆଖି ଦେଖିପାରେ ନାହିଁ, ଯେଉଁ ସ୍ଥାନକୁ ମନ ଯାଇପାରେ ନାହିଁ, ଆମେ ଇନ୍ଦ୍ରିୟ ଦ୍ୱାରା ଯାହାକୁ ଗ୍ରହଣ କରି ପାରୁନାହୁଁ, ସେହି ଅଜ୍ଞାତ ରାଜ୍ୟକୁ ଶକ୍ତିଶାଳୀ ସଙ୍କେତଗୁଡ଼ିକ ଆମକୁ ନେଇଯା'ନ୍ତି । ଭାରତୀୟ ପ୍ରଜ୍ଞା, ବିଜ୍ଞାନ, କଳା , ଭାସ୍କର୍ଯ୍ୟ, ସ୍ଥାପତ୍ୟ ଓ ଧର୍ମ ମାଧ୍ୟମରେ ଏକ ସମନ୍ୱୟ ରକ୍ଷା କରି ପରିଦୃଶ୍ୟମାନ ମୂର୍ତ୍ତି ଦ୍ୱାରା ଜ୍ଞାନର ଗୋଟିଏ ନିର୍ଦ୍ଦିଷ୍ଟ ଦିଗକୁ ଇଙ୍ଗିତ ଦେଇଥା'ନ୍ତି ।

**ଶିବଶବ୍ଦର ଆଭିଧାନିକ ଅର୍ଥ :** ଶବ୍ଦ ହେଉଛି ଅର୍ଥର ପ୍ରଥମ ସଙ୍କେତ । ତେଣୁ 'ଶିବ' ଶବ୍ଦ ପ୍ରଥମେ ଆଲୋଚନା ପରିସରକୁ ଆସିଥାଏ । 'ଶିବୁ' ଧାତୁର ଅର୍ଥ କଲ୍ୟାଣ । ଏଥିରୁ ଶିବ ଶବ୍ଦ ଉତ୍ପନ୍ନ । ଏହାର ଅର୍ଥ ଯିଏ ନିଜେ କଲ୍ୟାଣସ୍ୱରୂପ ଓ

ସମସ୍ତଙ୍କର କଲ୍ୟାଣ ବିଧାନ କରନ୍ତି, ସେହି ଈଶ୍ୱରଙ୍କ ନାମ ଶିବ ଅଟେ(ସତ୍ୟାର୍ଥପ୍ରକାଶ– ପ୍ରଥମ ସମ୍ମୁଲାସଃ) । ବେଦରେ କୁହାଯାଇଛି : ନ ସତ୍ ନ ଅସତ୍ ଶିବ ଏବ କେବଳଃ । ଅର୍ଥାତ୍ ସୃଷ୍ଟି ପୂର୍ବରୁ ନା ସତ୍ ଥିଲା ନା ଅସତ୍ । ଥିଲେ କେବଳ ଶିବ । ସେ ନିଜ ଶରୀରକୁ ଦୁଇ ଭାଗରେ ବିଭକ୍ତ କରି ଅର୍ଦ୍ଧନାରୀଶ୍ୱର ହୋଇ ଏହି ସମଗ୍ର ବିଶ୍ୱର ଆଦିସ୍ରଷ୍ଟା ହୋଇଥିଲେ । ସେ ପ୍ରଥମ ପୁରୁଷ ବ୍ରହ୍ମାଙ୍କୁ ସୃଷ୍ଟି କରିଥିଲେ । ଶିବ ଶବ୍ଦ ଶୁଭାବହ । ବ୍ରହ୍ମ ହିଁ ସର୍ବଶୁଭକାରୀ । ଅତଏବ ଶିବ ବ୍ରହ୍ମବାଚକ । ବ୍ରହ୍ମ ଶବ୍ଦର ସଂଜ୍ଞା ନିରୂପଣ କରି ତୈତ୍ତିରୀୟ ଉପନିଷଦ(ଭୃଗୁବଲ୍ଲୀ ଅନୁବାକ.୧)ରେ କୁହାଯାଇଛି : ପରମେଶ୍ୱରଙ୍କ ଅନନ୍ତ ସାମର୍ଥ୍ୟରୁ ପୃଥିବୀ ଆଦି ସକଳ ପଦାର୍ଥ ଉତ୍ପନ୍ନ ହୁଅନ୍ତି, ଯାହାଙ୍କଠାରୁ ଶକ୍ତିଲାଭ କରି ସ୍ଥିର ହୋଇ ରହନ୍ତି, ଶେଷରେ ପୁଣି ଯାହାଙ୍କ ମଧ୍ୟରେ ଲୀନ ହୋଇଯାଆନ୍ତି, ସେହି ହେଉଛନ୍ତି ବ୍ରହ୍ମ ।

କୁହାଯାଇଛି : ଶେତେ(ତିଷ୍ଠତି) ସର୍ବ ଜଗତ୍ ଯସ୍ମିନ୍ ସ ଶିବଃ ଶମ୍ଭୁଃ ବିକାରରହିତଃ । ଅର୍ଥାତ୍ ଯାହାଙ୍କଠାରେ ସାରା ଜଗତ୍ ଶୟନ କରିଥାଏ, ଯିଏ ବିକାର ରହିତ, ଯେ ଅମଙ୍ଗଳ ହ୍ରାସ କରିଥା'ନ୍ତି, ସେହି ମଙ୍ଗଳମୟ ରୂପ ହିଁ ଭଗବାନ ଶିବ । ସେ ଜଗତର ଆଧାର । ନିତ୍ୟ । ସତ୍ୟ । ପୁଷ୍ପଦନ୍ତ ବିରଚିତ ଶିବମହିମ୍ନ ସ୍ତୋତ୍ରରେ ପ୍ରାର୍ଥନା କରାଯାଇଛି : ନୃଣାମେକୋ ଗମ୍ୟସ୍ତ୍ୱମସି ପୟସାମର୍ଣ୍ଣବ ଇବ ।୭। ଅର୍ଥାତ୍ ଭୂପତିତ ସମସ୍ତ ଜଳ ଶେଷରେ ଯେମିତି ସମୁଦ୍ରକୁ ପ୍ରାପ୍ତ ହୋଇଥାଏ, ଠିକ୍ ସେହିପରି ମାନବକୁଳର ଏକମାତ୍ର ଲକ୍ଷ୍ୟସ୍ଥଳ ହେଉଛନ୍ତି ଶିବ । ଶିବ ମହାସମୁଦ୍ର ରୂପୀ ଅଖଣ୍ଡ ତତ୍ତ୍ୱ । ସକଳ ଜଗତର ଆଧାର । ଏହା ବ୍ୟତୀତ ଶୈବସିଦ୍ଧାନ୍ତ ପତି, ପଶୁ ଓ ପାଶ ବିଷୟରେ କହେ । ଈଶ୍ୱର ବା ଶିବ ପତି ଅଟନ୍ତି । ଆତ୍ମାକୁ ପଶୁ କୁହାଯାଇଛି । ଆତ୍ମାର ବନ୍ଧନକୁ ପାଶ ବୋଲି କୁହାଯାଇଛି । ସେହି ଆତ୍ମାର ଆତ୍ମା ପରମାତ୍ମାଙ୍କ କୃପା ହେଲେ ଆତ୍ମାର ବନ୍ଧନ ବା ପାଶ ମୁକୁଳି ଯାଏ । ଆତ୍ମାର ବନ୍ଧନକୁ ହରଣ କରୁଥିବାରୁ ଓ ପ୍ରଳୟ ସମୟରେ ଜଗତକୁ ହରଣ କରୁଥିବାରୁ ସେ ହର । ଶୈବଧର୍ମର ଜନୈକ ଆଚାର୍ଯ୍ୟ ମାଣିକ୍ ବାଚକର କହନ୍ତି : ଶିବଙ୍କ ପାଇଁ ପୁଂଲିଙ୍ଗ, ସ୍ତ୍ରୀଲିଙ୍ଗ ଏବଂ କ୍ଳୀବଲିଙ୍ଗ ବ୍ୟବହୃତ ହୋଇପାରିବ । ଶିବ, ଶିବା ଏବଂ ଶିବମ୍ –ଏ ତିନୋଟି ଯାକ ବ୍ୟବହାର ଠିକ୍ ।

ଶଇବ ଶିବ । ଶ ଅର୍ଥାତ୍ ନିତ୍ୟ ସୁଖ ବା ଆନନ୍ଦ, ବ ଅର୍ଥାତ୍ ଅମୃତଶକ୍ତି ଏବଂ ଇ ଅର୍ଥାତ୍ ପୁରୁଷ । ତେଣୁ ଅମୃତରୂପୀ ନିତ୍ୟ ଆନନ୍ଦ ପ୍ରଦାନକାରୀ ପୁରୁଷ ହୋଇଥିବାରୁ ସେ ଶିବ ନାମରେ ଅଭିହିତ ହୋଇଅଛନ୍ତି । ସେଥିପାଇଁ ଶିବପୁରାଣରେ କୁହାଯାଇଛି :

ଶ ନିତ୍ୟଂ ସୁଖମାନନ୍ଦମିକାରଃ ପୁରୁଷଃ ସ୍ମୃତଃ ।
ବକାରଃ ଶକ୍ତିରମୃତଂ ମେଳନଂ ଶିବ ଉଚ୍ୟତେ ॥

ଭଗବାନ ଶିବ ମହେଶ୍ୱର ନାମରେ ପରିଚିତ । ସମସ୍ତ ଜୀବଜଗତ ତାଙ୍କଠାରୁ ମହା ଐଶ୍ୱର୍ଯ୍ୟ ଆଦି ପ୍ରାର୍ଥନା କରି ଲାଭ କରୁଥିବାରୁ ତାଙ୍କର ମହେଶ୍ୱର ନାମ । ସେ ସମସ୍ତ ଜୀବ ଜଗତର ପ୍ରଭୁ ହୋଇଥିବାରୁ ଈଶାନ । ଦେବତାମାନଙ୍କ ଦ୍ୱାରା ଚିରବନ୍ଦିତ ବୋଲି ସେ ମହାଦେବ । ପଶୁ ଅର୍ଥାତ୍ ଜୀବମାନଙ୍କର ପ୍ରଭୁ ବୋଲି ସେ ପଶୁପତି । ନିଜକୁ ନିଜେ ସୃଷ୍ଟି କରିଥିବାରୁ ସେ ସ୍ୱୟମ୍ଭୁ । ତାଙ୍କ ଶରୀରର ବର୍ଣ୍ଣ ଧୂମରୂପ ହୋଇଥିବାରୁ ସେ ଧୂର୍ଜଟି । ବିଶ୍ୱବ୍ରହ୍ମାଣ୍ଡ ପ୍ରଳୟ ଘଟାଇ ଥା'ନ୍ତି ବୋଲି ସେ ମହାକାଳ । ସେ ଚିର ସ୍ଥିର ଓ ଅବିଚଳିତ, ତେଣୁ ସେ ସ୍ଥାଣୁ । ଅଖିଳ ବିଶ୍ୱକୁ ବିଷଜ୍ୱାଳାରୁ ରକ୍ଷା କରିଥିବାରୁ ସେ ନୀଳକଣ୍ଠ । ସଂହାରକାରୀ ଭାବରେ ସେ ହର, ସେ ଶଂ ଅର୍ଥାତ୍ ମୁକ୍ତିବିଧାନ କରୁଥିବାରୁ ଶଙ୍କର ।..(ପରେ ସଂଯୁକ୍ତ ହୋଇଛି –ଶ୍ୱେତାଶ୍ୱେତର ଉପନିଷଦ(୩/୧୧)ରେ ଶିବଶବ୍ଦର ବ୍ୟାପକତା ପ୍ରକଟିତ ହୋଇଛି ଯେ ସମସ୍ତଙ୍କ ମୁଖ, ମସ୍ତକ, କଣ୍ଠସ୍ୱରୂପ, ସମସ୍ତଙ୍କର ହୃଦୟସ୍ଥିତ ସର୍ବବ୍ୟାପକ, ସର୍ବାନ୍ତରଗାମୀ ମଙ୍ଗଳମୟ ହିଁ ଭଗବାନ୍ ପଦବାଚ୍ୟ । କୈବଲ୍ୟ ଉପନିଷଦ୍(୧/୧୮)ମନ୍ତ୍ରରେ କୁହାଯାଇଛି : ପରଂବ୍ରହ୍ମ ହେଉଛନ୍ତି ଏକାଧାରରେ ବ୍ରହ୍ମା–ଶିବ–ଇନ୍ଦ୍ରାଦି ଦେବଗଣ–ବିଷ୍ଣୁ–ପ୍ରାଣ–କାଳ–ଅଗ୍ନି–ଚନ୍ଦ୍ର ସ୍ୱରୂପ । ପାଣିନିଙ୍କ ମତରେ ଶୀଙ(ସ୍ୱପ୍ନେ)ଧାତୁରୁ ନିଷ୍ପନ୍ନ ଶବ୍ଦ ହେଉଛି ଶିବ । ଏହାର ବ୍ୟୁତ୍ପତ୍ତି ହେଉଛି ଶେତେ ଇତି ଶିବଃ । ଅର୍ଥାତ୍ ଶିବ ସର୍ବଦା ସମାଧିସ୍ଥ ଥା'ନ୍ତି ଓ ମହାପ୍ରଳୟ କାଳରେ ତମୋଗୁଣଯୁକ୍ତ ହୋଇ ବିନାଶ କ୍ରିୟା ନିର୍ବାହ କରନ୍ତି । ମହାପୁରୁଷଙ୍କ ସୁପ୍ତିତ୍ୱ ହିଁ ପ୍ରଳୟର କାରଣ ଓ କାରକ । ପୁନଶ୍ଚ

ଅନ୍ୟ ମତରେ–ଶେରତେ ପ୍ରାଣିନୋ ଯତ୍ର ସ ଶିବଃ । ଅର୍ଥାତ୍ ଅଶେଷ ପାପତାପରେ ଉଦ୍‌ବିଗ୍ନ ହୋଇ ପ୍ରାଣୀମାନେ ବିଶ୍ରାମ ନିମନ୍ତେ ଯେଉଁଠି ଶୟନ କରନ୍ତି, ସେହି ସର୍ବାଶ୍ରୟ ହିଁ ଶିବ । ଆହୁରି ମଧ୍ୟ ଭରତକୃତ ଅମରଟୀକା ମତରେ, ଶିବଂ କଲ୍ୟାଣଂ ବିଦ୍ୟତେଽସ୍ୟ–ଅର୍ଥାତ୍ ମଙ୍ଗଳ ଯାହାଠାରେ ସନ୍ନିବିଷ୍ଟ ସେ ଶିବ । ପୁନଶ୍ଚ ଶ୍ୟତି ନାଶୟତି ଅଶୁଭମିତି ଶିବଃ । ଅର୍ଥାତ୍ ଅଶୁଭର ବିନାଶକ ହିଁ ଶିବ । ଅନ୍ୟ ଏକ ମତରେ ଶେରତେଽବତିଷ୍ଠନ୍ତେଽଣିମାଦ୍ୟାଷ୍ଟଗୁଣା ଅସ୍ମିନ୍ନିତି ଶିବଃ । ଏହାର ଅର୍ଥ ହେଉଛି, ଅଣିମାଦି ଅଷ୍ଟ ସିଦ୍ଧିମୟ ଗୁଣାବଳୀ ଯାହାଠାରେ ପରିପୂର୍ଣ୍ଣ ରହିଛି ସେ ଶିବ । ଶିବୋପିଷଦ (୧/୧୦)ମତରେ, ଅଶିବାଃ ପାଶସଂଯୁକ୍ତାଃ ପଶବଃ ସ୍ମୃତଃ । ଅର୍ଥାତ୍ ଜାଗତିକ ମାୟାପାଶରେ ବଦ୍ଧ ହୋଇଥିବା ତଥା ଚେତନା ଥାଇ ସୁଦ୍ଧା ଅଚେତନ ପଶୁଭାବରେ ବ୍ୟବହାର କରୁଥିବା ଜୀବମାନଙ୍କୁ ପାଶମୁକ୍ତ କରୁଥିବା ଈଶ୍ୱର ହିଁ ଶିବ । ଅନୁରୂପ ଭାବରେ ଶିବମହାପୁରାଣ ଅନ୍ତର୍ଗତ ବିଦ୍ୟେଶ୍ୱରସଂହିତାର ଅଷ୍ଟାଦଶ ଶ୍ଳୋକରେ କୁହାଯାଇଛି : ଶଂ ନିତ୍ୟସୁଖମାନନ୍ଦମିକାରଃ ପୁରୁଷଃ ସ୍ମୃତଃ । ବକାରଃ ଶକ୍ତିରମୃତଂ ମେଳନଂ ଶିବ ଉଚ୍ୟତେ ॥ ତସ୍ମାଦେବଂ ସ୍ୱମାତ୍ମାନଂ ଶିବଂ କୃତ୍ୱାର୍ଦ୍ଧର୍ଚୟେଚ୍ଛିବମ୍ ॥ ଅର୍ଥାତ୍ ଶିବ ଶବ୍ଦରେ ଥିବା ଶକାର ଆନନ୍ଦଦାୟକ, ଇକାର ପୁରୁଷବାଚକ ତଥା ବକାର ଅମୃତଶକ୍ତିବାଚକ ଓ ଏହି ତିନି ତ୍ୱର ମିଳନରେ ଶିବଶବ୍ଦ ନିଷ୍ପନ୍ନ । ପ୍ରତି ଜୀବ ଭଗବାନ୍ ଶିବଙ୍କୁ ଏହିପରି ଆତ୍ମସ୍ୱରୂପ ଜାଣି ଅର୍ଚ୍ଚନା କରିବା ଉଚିତ । ବ୍ୟାସଦେବ ଶିବଙ୍କର ସହସ୍ର ନାମାବଳୀ ମହାଭାରତର ଅନୁଶାସନ ପର୍ବରେ ସପ୍ତଦଶ ଅଧ୍ୟାୟରେ ବର୍ଣ୍ଣନା କରିଛନ୍ତି ।

**ଦେବତାମାନଙ୍କର ପରମ ଆରାଧ୍ୟ ଦେବ ଶିବ ପରାତ୍ପର:** ସର୍ବଶକ୍ତିମାନ୍ ଶିବ ଗୁଣମୟ ଓ ଗୁଣାତୀତ । ଶିବଙ୍କ ବିଭୂତି ଅନେକ ଓ ପ୍ରତ୍ୟେକ ନାମ ଗୁଣବାଚକ । ସେ ନିର୍ଗୁଣ ବ୍ରହ୍ମ । ସଗୁଣ ଈଶ୍ୱର । ବର୍ଣ୍ଣନାତୀତ ହେଲେ ମଧ୍ୟ ଅନୁଭବଗମ୍ୟ । ସେ ସକଳ ବିଦ୍ୟାର ମୂଳ ଉତ୍ସ । ସକଳ କଳାର ଉତ୍ପତ୍ତିସ୍ଥଳ । ତାଙ୍କଠାରୁ ବେଦ ତଥା ପ୍ରଣବର ଉତ୍ପତ୍ତି । ସେ ଅନାଦି । ଅନନ୍ତ । ଅଜ । ଅବିନାଶୀ । ସର୍ବଜ୍ଞ । ସର୍ବଶକ୍ତିମାନ୍ । ସର୍ବ ପ୍ରାଣୀଙ୍କ ପ୍ରାଣରେ ତାଙ୍କର ବାସ । ସେ ସର୍ବବ୍ୟାପକ । ସର୍ବାଶୟ । ସର୍ବତନ୍ତ୍ର । ସ୍ୱତନ୍ତ୍ର । ସର୍ବନିୟନ୍ତା । ସର୍ବଗତି । ନିରାଭାସ । ନିରାମୟ । ନିରୀହ । ଶବ୍ଦାତୀତ । ପ୍ରକୃତିପର । ପରାତ୍ପର । ପରଂତପ । ପରମାନନ୍ଦ । ପରଂବ୍ରହ୍ମ । ବେଦମାନେ ତାଙ୍କୁ ବିଶ୍ୱପ୍ରପଞ୍ଚର ସ୍ରଷ୍ଟା, ପାଳକ ଓ ସଂହାରକ କହି ଗୁଣଗାନ କରିଛନ୍ତି । ଏହି ପ୍ରସଙ୍ଗରେ ପରମାତ୍ମାଙ୍କ ସଂଜ୍ଞା ନିରୂପଣ କରି ଋଗ୍ ବେଦ(୧୦/୧୨୯/୬୩)ରେ କୁହାଯାଇଛି: ହେ ମନୁଷ୍ୟ ! ଯାହାଙ୍କଠାରୁ ଏ ବିବିଧ ସୃଷ୍ଟି ପ୍ରକାଶିତ ହୋଇଛି, ଯେ ଏହି ସୃଷ୍ଟିକୁ ଧାରଣ କରିବା ସଙ୍ଗେ ସଙ୍ଗେ ପ୍ରଳୟ ମଧ୍ୟ କରନ୍ତି, ସକଳ ଜଗତର ଯେ ଏକମାତ୍ର ସ୍ୱାମୀ ଯାହାଙ୍କ ବ୍ୟାପକତା ମଧ୍ୟରେ ସମଗ୍ର ଜଗତ ଉତ୍ପତ୍ତି, ସ୍ଥିତି ଓ ପ୍ରଳୟ ଅବସ୍ଥାକୁ ପ୍ରାପ୍ତ ହୁଏ, ସେହି ହେଉଛନ୍ତି, ପରମାତ୍ମା । ପ୍ରକୃତିର ସ୍ୱ ରଜ ଏବଂ ତମୋଗୁଣର ଅବସ୍ଥାକୁ ଯଥାକ୍ରମେ ଜାଗ୍ରତ, ସ୍ୱପ୍ନ ଏବଂ ସୁଷୁପ୍ତି କୁହାଯାଏ । ଶିବ ଏହି ତିନୋଟି ଅବସ୍ଥାକୁ ଅତିକ୍ରମ କରି ଚତୁର୍ଥ ତୁରୀୟ ଅବସ୍ଥାରେ ଥା'ନ୍ତି । ଶିବଙ୍କର ଅଷ୍ଟଗୁଣ ଥାଏ, ଯଥା–ସ୍ୱାତନ୍ତ୍ର୍ୟ, ପବିତ୍ରତା, ଆତ୍ମଜ୍ଞାନ, ନିର୍ମଳତା, ଅନୁଗ୍ରହ, ସର୍ବଶକ୍ତି ଓ ଆନନ୍ଦ । ଶିବଜ୍ଞାନବୋଧର ଷଷ୍ଠ ସୂତ୍ର କହେ: ପଣ୍ଡିତମାନେ ଶିବଙ୍କୁ ଶିବ–ସତ୍ ବା ଚିତ୍–ସତ୍ ବୋଲି କହନ୍ତି । ଚିତ୍ ବା ଶୁଦ୍ଧ ଚୈତନ୍ୟ ଭାବରେ ଶିବ ଅବୋଧଗମ୍ୟ ଏବଂ ମନୁଷ୍ୟର ବୋଧର ବାହାରେ । ଶିବ ବିଶ୍ୱରୂପ ଏବଂ ବିଶ୍ୱାଧିକ । ସେ ସ୍ୱରୂପ ଓ ଅରୂପ । ସେ ଅଷ୍ଟମୂର୍ତ୍ତି । ମାଣିକ୍ ବାଚକରଙ୍କ ଉକ୍ତି ଅନୁସାରେ ପୃଥିବୀ, ଜଳ, ବାୟୁ, ଅଗ୍ନି, ଆକାଶ, ସୂର୍ଯ୍ୟ, ଚନ୍ଦ୍ର ଓ ଚେତନଶୀଳ ମନୁଷ୍ୟର ମୂର୍ତ୍ତିରେ ଶିବ ସର୍ବବ୍ୟାପୀ ହୋଇ ରହିଥା'ନ୍ତି । ସେ ସର୍ବ ସିଦ୍ଧିଦାୟକ । ସର୍ବଶ୍ରେୟସ୍କର । ଶାସ୍ତ୍ରମାନଙ୍କରେ ଉଲ୍ଲେଖ ରହିଛି ଯେ କେବଳ ଦେବ, ଦନୁ. ଋଷି, ମହର୍ଷି, ଯୋଗୀନ୍ଦ୍ର, ମୁନୀନ୍ଦ୍ର, ସିଦ୍ଧଗନ୍ଧର୍ବ ନୁହଁନ୍ତି, ବ୍ରହ୍ମା ବିଷ୍ଣୁ ମଧ୍ୟ ଏହି ମହାଦେବଙ୍କ ଉପାସନାରେ ବ୍ୟାପୃତ ଥା'ନ୍ତି ।

**ଶିବ, ବିଷ୍ଣୁ ଓ ଶ୍ରୀକୃଷ୍ଣ ପରସ୍ପର ଅଭିନ୍ନ :** ଭଗବାନ ଶ୍ରୀରାମ ତଥା ଶ୍ରୀକୃଷ୍ଣଙ୍କ ପାଇଁ ଶିବ ହେଉଛନ୍ତି ପରମ ଆରାଧ୍ୟ । ପୁନଶ୍ଚ ହରିହରଙ୍କ ଅଭିନ୍ନତା ପ୍ରମାଣ କରି ସ୍ୱୟଂ ବିଷ୍ଣୁ କହିଛନ୍ତି:

ଶିବେ ସଂସ୍ଥାପିତେ ବିପ୍ର ମମ ସଂସ୍ଥାପନଂ ଭବେତ୍
ନାବୟୋରନ୍ତରଂ କିଞ୍ଚିଦେକଭାବୌ ଦ୍ୱିଧାକୃତୌ ।

ଯୋ ରୁଦ୍ରଃ ସ ସ୍ୱୟଂ ବିଷ୍ଣୁଃ ଯୋ ବିଷ୍ଣୁଃ ସ ମହେଶ୍ୱରଃ
ଉଭୟୋରନ୍ତରଂ ନାସ୍ତି ପବନାକାଶୟୋରିବ ॥

**ଶିବପୂଜାର ଅୟମାରମ୍ଭ କାଳ:** ବୈଦିକ କାଳରେ ଲିଙ୍ଗପୂଜା ଆର୍ଯ୍ୟମାନଙ୍କ ଦ୍ୱାରା ଗୃହୀତ ହେଉ କି ନହେଉ, ଅନାର୍ଯ୍ୟ ଗୋଷ୍ଠୀ ଦ୍ୱାରା ଯେ ଆଦୃତ ହୋଇଥିଲା, ଏଥିରେ ସନ୍ଦେହ ନାହିଁ । ଲିଙ୍ଗପୂଜକ ଏହି ଅନାର୍ଯ୍ୟ ଗୋଷ୍ଠୀ ଯଜ୍ଞବିରୋଧୀ ଥିଲେ । ଆର୍ଯ୍ୟମାନେ ମନ୍ତ୍ରପାଠ କରି ଯଜ୍ଞକୁଣ୍ଡରେ ହବି (ଘିଅ) ଅର୍ପଣ କଲାବେଳେ ଲିଙ୍ଗପୂଜକମାନେ ବାଧା ସୃଷ୍ଟି କରୁଥିଲେ । ଏହି ଯଜ୍ଞ ବିରୋଧୀମାନଙ୍କୁ ପ୍ରତିରୋଧ କରିବା ପାଇଁ ଆର୍ଯ୍ୟମାନେ ଇନ୍ଦ୍ରଙ୍କୁ ସ୍ତୁତି କରିଛନ୍ତି । ଲିଙ୍ଗ ଉପାସକମାନଙ୍କୁ ହତ୍ୟା କରି ଇନ୍ଦ୍ର ସେମାନଙ୍କ ଗ୍ରାମ ଲୁଣ୍ଠନ କରୁଥିବାର ସୂଚନା ମଧ୍ୟ ଋଗ୍ ବେଦରେ ମିଳିଥାଏ । ଲିଙ୍ଗ ପୂଜକମାନେ ଦାସ ବା ଦସ୍ୟୁ ଭାବରେ ପରିଚିତ ଥିଲେ । ଦସ୍ୟୁମାନେ ପୁରାଣମାନଙ୍କରେ ରାକ୍ଷସ, ଅସୁର, ଦୈତ୍ୟାଦି ଭାବରେ ପରିଚିତ ଓ ସେମାନେ ଆର୍ଯ୍ୟ ବା ସୁର ବା ଦେବତାମାନଙ୍କର ଯଜ୍ଞକାର୍ଯ୍ୟରେ ବାରମ୍ବାର ବାଧା ସୃଷ୍ଟି କରିବାର ପର୍ଯ୍ୟାପ୍ତ ଦୃଷ୍ଟାନ୍ତ ରହିଛି । ଲିଙ୍ଗଦେବ ପରବର୍ତ୍ତୀ କାଳରେ ଶିବଙ୍କ ସହିତ ସମୀକୃତ ହୋଇଯାଇଛନ୍ତି ଓ ଶିବ ଦସ୍ୟୁ ବା ଅସୁରମାନଙ୍କର ଦେବତା ଭାବରେ ସେମାନଙ୍କୁ ସର୍ବଦା ସାହାଯ୍ୟ କରିଆସିଛନ୍ତି । ସାଧାରଣତଃ ବିଷ୍ଣୁ ସୁରମାନଙ୍କର ଓ ଶିବ ଅସୁରମାନଙ୍କର ସପକ୍ଷରେ ରହି ସଂଗ୍ରାମରେ ସହାୟକ ହୋଇଛନ୍ତି ବା ସଂଗ୍ରାମର ସମ୍ମୁଖୀନ ହୋଇଛନ୍ତି । ପୁରାଣରେ ଏ ସମ୍ପର୍କୀୟ ବହୁତ କୌତୁକାବହ ଉପାଖ୍ୟାନ ଦେଖିବାକୁ ମିଳେ । ଯଜ୍ଞ କାର୍ଯ୍ୟ ଓ ବୈଦିକ କର୍ମକାଣ୍ଡକୁ ଶିବ ଘୃଣା କରିବା ଓ ଶ୍ମଶାନରେ ଭୂତପ୍ରେତଙ୍କ ସହ ଉଲଗ୍ନ ଅବସ୍ଥାରେ ଅବସ୍ଥାନ କରିବା ଦୃଷ୍ଟାନ୍ତ ପୁରାଣମାନଙ୍କରେ ଉପସ୍ଥାପିତ ହୋଇଛି । ଦକ୍ଷ ପ୍ରଜାପତି ନିଜ ଦ୍ୱାରା ଆୟୋଜିତ ଯଜ୍ଞକୁ ଯଜ୍ଞବିରୋଧୀ ଜାମାତା ଶିବଙ୍କୁ ନିମନ୍ତ୍ରଣ ନ କରିବାରୁ କନ୍ୟା ସତୀ ଯଜ୍ଞକୁଣ୍ଡରେ ଆତ୍ମାହୁତି ଦେବା ଓ କ୍ରୁଦ୍ଧ ଶିବ ଉଲଗ୍ନ ହୋଇ ଯଜ୍ଞ ନଷ୍ଟ କରିବା ସଙ୍ଗେ ସଙ୍ଗେ ଦେବତାମାନଙ୍କୁ ଆକ୍ରମଣ କରିବା ଦୃଷ୍ଟାନ୍ତ ଭାଗବତ ଆଦି ବହୁ ପୁରାଣରେ ବର୍ଣ୍ଣିତ ।

ବୋଧହୁଏ ପାଣିନିଙ୍କ ସମୟରେ(ଖ୍ରୀଷ୍ଟପୂର୍ବ ୫ମ ଶତାବ୍ଦୀ) ଆର୍ଯ୍ୟମାନଙ୍କ ମଧ୍ୟରେ ଲିଙ୍ଗ ପୂଜାର ପ୍ରଚଳନ ନଥିଲା । କାରଣ ସେ ଅଷ୍ଟାଧ୍ୟାୟୀର କୌଣସି ସ୍ଥାନରେ ଲିଙ୍ଗ ଶବ୍ଦ ବା ଲିଙ୍ଗ ପୂଜାର କୌଣସି ସୂଚନା ଦେଇନାହାଁନ୍ତି । ପତଞ୍ଜଳି(ଖ୍ରୀ.ପୂ.୨ୟ ଶତାବ୍ଦୀ)ଙ୍କ ସମୟକୁ ମଧ୍ୟ ଲିଙ୍ଗ ପୂଜା ଅପ୍ରଚଳିତ ଥିଲା । କାରଣ ସେ ଶିବଙ୍କ ପ୍ରତିକୃତି ପୂଜା ପାଉଥିବାର ଉଲ୍ଲେଖ କରିଥିଲେ ମଧ୍ୟ ଲିଙ୍ଗ ପୂଜାର କୌଣସି ଆଭାସ ପ୍ରଦାନ କରି ନାହାଁନ୍ତି । କୁଶାଣ ବଂଶୀୟ ରାଜା ବିମ୍ କାଡ଼ଫିସେସ୍ ବା ଦ୍ୱିତୀୟ କାଡ଼ଫିସେସ୍(ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ)ଶିବ ଉପାସକ ଥିଲେ ଓ ତାଙ୍କର ମୁଦ୍ରାର ପୃଷ୍ଠଭାଗରେ ତ୍ରିଶୂଳଧାରୀ ଶିବଙ୍କର ପ୍ରତିକୃତି ମୁଦ୍ରିତ କରିଥିଲେ । ସେତେବେଳେକୁ ଲିଙ୍ଗ-ଉପାସନାର ପ୍ରଚଳନ ଥିଲେ ଲିଙ୍ଗ ପ୍ରତିକୃତି ସ୍ଥାନ ପାଇଥା'ନ୍ତା । ତେବେ ପ୍ରଥମେ ଶ୍ୱେତାଶ୍ୱେତର ଉପନିଷଦରୁ ସୂଚନା ପାଉ ଯେ ଆର୍ଯ୍ୟମାନେ ଈଶାନଦେବ ରୂପରେ ଲିଙ୍ଗଦେବଙ୍କୁ ସ୍ୱୀକାର କରି ଗଲେଣି । ଏଥିରେ ଈଶାନଦେବଙ୍କୁ ପ୍ରତ୍ୟେକ ରୂପ ଓ ଯୋନିର ଅଧୀଶ୍ୱର ଭାବରେ ଉଚ୍ଚ ସ୍ଥାନ ଦିଆଯାଇଛି । ସେ ହିଁ ଆତ୍ମା, ସେ ହିଁ ପରମାତ୍ମା, ସେ ହିଁ ସକଳ ସୃଷ୍ଟିର ମୂଳ ଉତ୍ସ ରୂପେ ପ୍ରଶଂସିତ ହୋଇଛନ୍ତି ।

ମତ୍ସ୍ୟପୁରାଣରେ ବାଣାସୁର ଶିବଲିଙ୍ଗକୁ ଶିର ଉପରେ ସ୍ଥାପନ କରି ସ୍ତୁତି କରୁଥିବା ଘଟଣାରୁ ତତ୍କାଳରେ ଲିଙ୍ଗ ପୂଜାର ପ୍ରାଧାନ୍ୟ ପ୍ରମାଣିତ ହେଉଅଛି । ମହାଭାରତର ଅନୁଶାସନ ପର୍ବରେ ଲିଙ୍ଗ-ଉପାସନାର ମହତ୍ତ୍ୱ ପ୍ରଦର୍ଶିତ ହେଉଅଛି । ବନ ପର୍ବରେ ମଧ୍ୟ ଅର୍ଜୁନ ମୃତ୍ତିକାବେଦୀ ଉପରେ ଶିବ(ଲିଙ୍ଗ)ଙ୍କୁ ସ୍ଥାପନ କରି ସ୍ତୁତି ଦ୍ୱାରା ତାହାଙ୍କୁ ସନ୍ତୁଷ୍ଟ କରି ପାଶୁପତ ଅସ୍ତ୍ର ଲାଭ କରିଥିବା ବର୍ଣ୍ଣିତ । ଐତିହାସିକ ଓ ପ୍ରତ୍ନତାତ୍ତ୍ୱିକ ଉପାଦାନ ଓ ତଥ୍ୟ ଦୃଷ୍ଟିରୁ ଦେଖିଲେ ଭାରତରେ ଲକୁଳୀଶ ସଂପ୍ରଦାୟର ଅଭ୍ୟୁଦୟ ସଙ୍ଗେ ସଙ୍ଗେ ଲିଙ୍ଗ ପୂଜାର ପ୍ରଚଳନ ଘଟିଥିଲା । ଏହି ସଂପ୍ରଦାୟର ସ୍ରଷ୍ଟା ଲକୁଳୀଶ ହେଉଛନ୍ତି ପ୍ରଥମ ଶତାବ୍ଦୀର ସନ୍ନ୍ୟାସୀ । ଉଭୟ ଉତ୍ତର ଭାରତ ଓ ଦକ୍ଷିଣ ଭାରତରେ ଏହି ସଂପ୍ରଦାୟ ଦ୍ୱାରା ଲିଙ୍ଗ ପୂଜାର ମାହାତ୍ମ୍ୟ ପ୍ରଚାରିତ ହୋଇଥିଲା । ଚତୁର୍ଥ ଶତାବ୍ଦୀରେ ଖୋଦିତ ମଥୁରାର ଏକ ସ୍ତମ୍ଭଲେଖରୁ ଜଣାଯାଏ ଉପମିତେଶ୍ୱର ଓ କପିଳେଶ୍ୱର ନାମକ ଦୁଇ ଶୈବ ଆଚାର୍ଯ୍ୟଙ୍କର ସମ୍ମାନ ଉପଲକ୍ଷେ ଦୁଇଟି ଶିବଲିଙ୍ଗ ପ୍ରତିଷ୍ଠା କରାଯାଇଥିଲା । ଏଥିରୁ ଜଣାଯାଉଛି ଶୈବମାନେ ଶୈବାଚାର୍ଯ୍ୟମାନଙ୍କୁ ଶିବ ରୂପେ ଓ ଶିବଙ୍କୁ ଲିଙ୍ଗ ରୂପରେ ହିଁ ଗ୍ରହଣ କରୁଥିଲେ ।

ଦ୍ୱାଦଶ ଶତାବ୍ଦୀ ପୂର୍ବରୁ ଶୈବଧର୍ମ ଓଡ଼ିଶାରେ ଲୋକପ୍ରିୟ ହୋଇପାରିଥିଲା । ଏକାମ୍ରକାନନ ବା ଆଧୁନିକ ଭୁବନେଶ୍ୱର ଶୈବପୀଠ ମଧ୍ୟରେ ସର୍ବଜନବିଦିତ । ଉତ୍କଳର ଗ୍ରାମେ ଗ୍ରାମେ ଶିବ ମନ୍ଦିରମାନ ପ୍ରତିଷ୍ଠିତ । ଦକ୍ଷିଣ ଭାରତରେ ଶିବ ପୂଜା ଯୀଶୁ ଖ୍ରୀଷ୍ଟଙ୍କ ଜନ୍ମ ପୂର୍ବରୁ ପ୍ରଚଳିତ ହୋଇଆସୁଅଛି । ଭଗବାନ ଶ୍ରୀରାମଚନ୍ଦ୍ର ପ୍ରସିଦ୍ଧ ଦକ୍ଷିଣସାଗର କୂଳରେ ଲଙ୍କା ଯାତ୍ରା ସମୟରେ ଶିବପୂଜା କରିଥିବାର ରାମାୟଣରୁ ମିଳିଥାଏ । ଭଗବାନ ଶିବଙ୍କର ପୂଜା ପାଇଁ ସୋମବାର ପ୍ରତ୍ୟେକ ପକ୍ଷର ଚତୁର୍ଦ୍ଦଶୀ ତିଥି ଓ ଶିବରାତ୍ରି ସବୁଠାରୁ ଉଲ୍ଲେଖଯୋଗ୍ୟ । ସୃଷ୍ଟି ସର୍ଜନା ପରେ କୈଳାସ ପର୍ବତ ଉପରେ ପାର୍ବତୀ ଶିବଙ୍କୁ ପ୍ରଶ୍ନ କରିଥିଲେ, ହେ ପ୍ରଭୋ ! ଆପଣଙ୍କ ପୂଜା ପାଇଁ କେଉଁ ଦିବସଟି ସବୁଠାରୁ ଉତ୍କୃଷ୍ଟ ? ଭଗବାନ ଶିବ ଏହାର ଉତ୍ତରରେ କହିଥିଲେ, ଫାଲଗୁନ ମାସ କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ତିଥି 'ଶିବରାତ୍ରି' ହିଁ ମୋ ପୂଜା ପାଇଁ ସର୍ବୋତ୍କୃଷ୍ଟ ।

**ଲିଙ୍ଗ ସହିତ ଯୋନିର ସଂଯୋଗ କଲ୍ୟାଣ ଓ ଶକ୍ତି ସଂଯୋଗର ସଙ୍କେତ ବହନ କରେ :** ଲିଙ୍ଗ ପ୍ରାଣୀସୃଷ୍ଟି ପ୍ରକ୍ରିୟାରେ ଶୁଦ୍ଧ ସଙ୍କେତ ବହନ କରେ । ଏହା ପ୍ରଜନନ ଶକ୍ତିର ପ୍ରତୀକ । ଲିଙ୍ଗ ଉପାସନା ମୂଳରେ ନିଶ୍ଚିତ ଭାବରେ ଈଶ୍ୱରଙ୍କର ପ୍ରଜନନ ବା ସର୍ଜନ ଶକ୍ତି ମାହାତ୍ମ୍ୟଟି ନିହିତ । ଭାରତୀୟ ସଂସ୍କୃତିରେ ବ୍ରହ୍ମା ସୃଷ୍ଟିର, ବିଷ୍ଣୁ ପାଳନର ଓ ଶିବ ସଂହାର-ଦେବତା ଭାବରେ ଆଖ୍ୟାତ ହୋଇଥିଲେ ହେଁ ଏସବୁ ଦେବତାଙ୍କର ଉପାସକମାନେ ନିଜ ନିଜ ଦେବତାଙ୍କୁ ଏହି ତ୍ରିଶକ୍ତିର ଅଧିକାରୀ ଭାବରେ ବର୍ଣ୍ଣନ କରିଯାଇଛନ୍ତି । ମହାଭାରତ, ଲିଙ୍ଗପୁରାଣ, ଶିବ ପୁରାଣ ପ୍ରଭୃତିରେ ସୃଷ୍ଟିକର୍ତ୍ତା ରୂପେ ଲିଙ୍ଗ ରୂପୀ ଶିବ କୀର୍ତ୍ତିତ ହୋଇଛନ୍ତି । ଋଗ୍ ବେଦରେ ଶିଷ୍ଣଦେବ(ଶିଷ୍ଣ ବା ଲିଙ୍ଗ ଯେଉଁମାନଙ୍କର ଦେବତା ଅର୍ଥାତ୍ ଲିଙ୍ଗ ଉପାସକ)ମାନଙ୍କୁ ଭର୍ତ୍ସନା କରାଯାଇଥିବାରୁ ଲିଙ୍ଗ ଉପାସନା ଆର୍ଯ୍ୟ ସଂସ୍କୃତିର ନୁହେଁ, ଆର୍ଯ୍ୟେତର ସଂସ୍କୃତିରେ ପ୍ରାକ୍ ବୈଦିକ ଯୁଗରେ ପ୍ରଥମେ ପ୍ରଚଳିତ ହୋଇଥିବାର ଅନୁମାନ କରାଯାଏ । ସାଂଖ୍ୟଦର୍ଶନର ପୁରୁଷ-ପ୍ରକୃତିତ୍ୱ ଏହି ଲିଙ୍ଗ-ଯୋନି ଉପାସନାର ଏକ ବିକଶିତ ରୂପ ମାତ୍ର । ଆଦିମ ମଣିଷର ଧାରଣା ଥିଲା ଯେ ଯଦି ଅଧିକ ମୈଥୁନ କରାଯାଏ, ତେବେ ଶସ୍ୟ ଅଧିକ ପରିମାଣରେ ଉତ୍ପନ୍ନ ହୁଏ । ଏହି ଧାରଣାରୁ ଲିଙ୍ଗପୂଜା ଓ ଯୋନିପୂଜାର ଉଦ୍ଭବ ।

ଲିଙ୍ଗ ଯେଉଁଠାରେ ସ୍ଥାପନା କରାଯାଇଥାଏ, ତା'ର ତଳେ ଲିଙ୍ଗକୁ ସଂଯୋଗ କରି ଏକ ଯୋନି ଆକୃତିର ଆଧାରଶିଳା ରଖାଯାଇଥାଏ । ଲିଙ୍ଗ ଓ ଯୋନି ହେଉଛି ଏକ ଜୈବିକ କ୍ରିୟାର ପ୍ରତୀକ । ଏହା ପ୍ରକୃତି ପ୍ରେରିତ ହୋଇ ସୃଷ୍ଟି ପାଇଁ କ୍ରିୟାଶୀଳ ହୋଇଥାଏ । ଏହା ମଧ୍ୟ କଲ୍ୟାଣ ଓ ଶକ୍ତିର ସଂଯୋଗକୁ ବୁଝାଇଥାଏ । ଶକ୍ତିରୂପିଣୀ ପାର୍ବତୀଙ୍କୁ କଲ୍ୟାଣ ରୂପୀ ଶିବଙ୍କୁ ପାଇବାକୁ ହେଲେ ଘୋର ତପସ୍ୟା କରିବାକୁ ପଡ଼େ । ଶକ୍ତି କଲ୍ୟାଣଯୁକ୍ତ ହେଲେ ହିଁ ଜଗତ ସୃଜନକ୍ଷମ ହୁଏ । ଯେଉଁଠି କଲ୍ୟାଣ ସେଠାରେ ହିଂସା କି ଦ୍ୱେଷ ନଥାଏ । ସେଠି ଥାଏ କେବଳ ସଦ୍ଭାବନା ଓ ସହାବସ୍ଥାନ । କଲ୍ୟାଣ ମନ୍ତ୍ରରେ ସମସ୍ତେ ଦୀକ୍ଷିତ ହେବାକୁ ଆହ୍ୱାନ ଦେଇଥାଏ ଶିବରାତ୍ରି । ତେଣୁ ଶିବରାତ୍ରିର ନାମ କଲ୍ୟାଣର ରାତ୍ରି । ଆତ୍ମକଲ୍ୟାଣ ଦ୍ୱାରା ଜଗତର କଲ୍ୟାଣ ସାଧନା କରିବା ପାଇଁ ଏହା ପ୍ରେରଣା ଦେଇଥାଏ । ସୃଷ୍ଟିର ପ୍ରାରମ୍ଭ କାଳରେ ଶକ୍ତି ସ୍ୱରୂପା ମହାକାଳୀ ସଦାଶିବ ମହାକାଳଙ୍କ ସହିତ ରତି କରନ୍ତି, ଯେଉଁଥିରୁ ଜଗତର ପ୍ରସବ ହୋଇଥାଏ । ଏହି ଶୁଭ ମିଳନ ରାତ୍ରିର ସ୍ମୃତିରେ ମଧ୍ୟ ମହାଶିବରାତ୍ରି ପାଳନ କରାଯାଏ ବୋଲି କେହି କେହି କହନ୍ତି । ଶିବପୁରାଣ ଅନୁସାରେ ଏହିଦିନ ଭଗବାନ ଶଙ୍କର ଓ ପ୍ରଜାପତି ଦକ୍ଷଙ୍କ କନ୍ୟା ସତୀଙ୍କ ବିବାହ ହୋଇଥିଲା । ତେଣୁ ଶିବ ଓ ସତୀଙ୍କ ମିଳନର ରାତ୍ରି ହେଉଛି ଶିବରାତ୍ରି ବୋଲି କେତେକ କହନ୍ତି । ଲିଙ୍ଗ-ଯୋନିର ଏହି ମିଳନ ସୃଷ୍ଟିର ପ୍ରତୀକ, ପ୍ରଳୟର ନୁହେଁ । ତା' ବିଶ୍ୱଜନକ ଓ ବିଶ୍ୱଜନନୀର ସମ୍ମିଳିତ ସୃଷ୍ଟିକ୍ରିୟାର ପ୍ରତୀକ । ଏହା ମହେଶ୍ୱରୀ ବା ଶକ୍ତିଙ୍କ ସହିତ ମହେଶ୍ୱର ବା ଶିବଙ୍କ ମିଳନ । ପ୍ରକୃତି ସହିତ ପୁରୁଷର ମିଳନ । ଲିଙ୍ଗ ପୂଜାରେ ଲିଙ୍ଗ ଦୈହିକ ମିଳନର ପ୍ରତୀକ ନହୋଇ ଈଶ୍ୱରୀୟ ମିଳନର ପ୍ରତୀକ ହୋଇଥାଏ । ଶୈବବାଦର ଅନ୍ୟତମ ଶାଖା ବୀର ଶୈବଧର୍ମ ମତରେ ଶିବ ଭଗବାନଙ୍କ ସତ୍ ଏବଂ ଶକ୍ତି ସେଇ ଭଗବାନଙ୍କର ଚିତ୍ । ସେମାନଙ୍କ ପ୍ରତୀତିରେ ଲିଙ୍ଗ ପ୍ରତୀକରେ ସତ୍ ଓ ଚିତ୍‌ର ମିଳନ ହୋଇଥାଏ । କୁହାଯାଇଛି : ସ୍ୱୟଂ ଲିଙ୍ଗଂ ଗମକମେବ ହି । ଅର୍ଥାତ୍ ଶିବ ହେଉଛନ୍ତି ସ୍ୱୟଂ ଜ୍ଞାନ(ଶିବ ପ୍ରଜ୍ଞାନେ) ଓ ଏହି

ଜ୍ଞାନରୂପର ପ୍ରକାଶ ହେଉଛି ଲିଙ୍ଗ । ଏହି ଲିଙ୍ଗ ସତ୍–ଚିତ୍–ଆନନ୍ଦର ସମାହାର ଓ ଅଚଳପ୍ରତିଷ୍ଠ । ମହାପ୍ରଳୟ ସମୟରେ ସମସ୍ତ ଶକ୍ତି ଏହିଠାରେ ଲୟପ୍ରାପ୍ତ ହୋଇଥା'ନ୍ତି । ମାତ୍ର ଏହି ଲିଙ୍ଗର ଲୟ ନାହିଁ। ଅବ୍ୟକ୍ତ ଶକ୍ତିର ପ୍ରକାଶକ ଲିଙ୍ଗ, ଭଗଶବ୍ଦର ଅର୍ଥ ପ୍ରକୃତି ଓ ଏହି ଦୁଇଟିର ଆଧାରରେ ଶିବ ଏକାଧାରରେ ଲିଙ୍ଗ ଓ ଭଗବାନ୍ ।

**ବେଦର ରୁଦ୍ର ହିଁ ସଦାଶିବ :** ବୈଦିକ ଧର୍ମରେ ଶିବପୂଜା ବା ଲିଙ୍ଗପୂଜାର ସ୍ଥାନ ନଥିଲା । କିନ୍ତୁ ଶିବପର୍ଯ୍ୟାବାଚୀ ରୁଦ୍ରର ପ୍ରୟୋଗ ଦେଖିବାକୁ ମିଳେ । ଋଗ୍ ବେଦର ଚତୁର୍ଥ ଅନୁବାକର ଏକାଦଶ ସୂକ୍ତ ହେଉଛି ରୁଦ୍ର ସୂକ୍ତ । ସତ୍ୟାର୍ଥପ୍ରକାଶ ଗ୍ରନ୍ଥ(ପୃଷ୍ଠା ୧୩)ରେ ଏହାର ସଂଜ୍ଞା ନିରୂପଣ କରି କୁହାଯାଇଛି : ଗୋଟିଏ ଧାତୁ ଅଛି 'ରୁଦିର' । ଏଥିରେ ଣିଚ୍ ପ୍ରତ୍ୟୟ ଯୋଗ ହେଲେ ରୁଦ୍ର ଶବ୍ଦ ସିଦ୍ଧ ହୁଏ । । ଅର୍ଥାତ୍ 'ରୁଦିର' ଧାତୁର ଅର୍ଥ ବଡ଼ ପାଟିରେ କାନ୍ଦିବା, ପାଟି କରିବା, ଗର୍ଜନ କରିବା । ବୈଦିକ ଦେବତା ରୁଦ୍ର ବଡ଼ ଭୟଙ୍କର ଦେବତା ଥିଲେ । ତପସ୍ୱୀ ଦେବତା ଶିବ ମଧ୍ୟ ବଡ଼ ଭୟଙ୍କର ବୋଲି ବିଶ୍ୱାସ କରାଗଲା । ପୂର୍ବୋକ୍ତ ଗ୍ରନ୍ଥରେ ବ୍ୟାଖ୍ୟା କରାଯାଇଛି, ଅର୍ଥାତ୍ ଅନ୍ୟାୟୀକାରୀ ପାପୀମାନଙ୍କୁ ଦଣ୍ଡ ବିଧାନ କରି ସେମାନଙ୍କୁ ରୋଦନ କରାଉଥିବାରୁ ପରମେଶ୍ୱରଙ୍କ ନାମ ରୁଦ୍ର ଅଟେ । ଏହିକଥା ଶତପଥ ବ୍ରାହ୍ମଣ(୧୪/୭/୨୪)ରେ ମଧ ଅତି ସୁନ୍ଦର ଭାବରେ ବର୍ଣ୍ଣନା କରାଯାଇଛି : ମନୁଷ୍ୟ ଯାହା ମନରେ ଚିନ୍ତା କରେ, ତାହା ବାଣୀରେ ପ୍ରକାଶ କରେ । ବାଣୀରେ ଯାହା ପ୍ରକାଶ କରେ, କାର୍ଯ୍ୟରେ ତାହା ପରିଣତ କରେ ଏବଂ କାର୍ଯ୍ୟରେ ଯେପରି କରେ ତଦନୁରୂପ ଫଳ ପାଏ । ଏଣୁ ପାପକର୍ମ କରୁଥିବା ଜୀବ ଈଶ୍ୱରଙ୍କ ନ୍ୟାୟବ୍ୟବସ୍ଥାରେ ଦୁଃଖରୂପକ ଫଳ ପାଏ ଏବଂ କାନ୍ଦିବାକୁ ଲାଗେ ।

ଋଗ୍ ବେଦରେ ରୁଦ୍ରଙ୍କର ଯେଉଁ ମନ୍ତ୍ରସବୁ ରହିଛି ତାହା ଦୁଇ ପ୍ରକାର । ସେଥିରୁ ଗୋଟିଏ ହେଉଛି ସ୍ୱରୂପବୋଧକ ମନ୍ତ୍ର । ସେ ଦୃଢ ଅଙ୍ଗଯୁକ୍ତ । ସେ ବଜ୍ରଧାରୀ । ସେ ବାଣ ଓ ଧନୁଧାରଣ କରିଥା'ନ୍ତି । ସେ ଭୟଙ୍କର ଓ ବହୁରୂପୀ । ସେ ରଥରେ ବସି ଯାତ୍ରା କରୁଥା'ନ୍ତି । ସେ ବଣୁଆ ପଶୁ ପରି ହିଂସ୍ର । ଅନ୍ୟ ପ୍ରକାର ମନ୍ତ୍ରରେ ଧନ, ସନ୍ତାନ, ଆୟୁ, ଆରୋଗ୍ୟ ତଥା ବିଜୟ ଆଦି ଲୌକିକ ଅଭିବୃଦ୍ଧି ନିମିତ୍ତ ପ୍ରାର୍ଥନା କରାଯାଇଛି । ସେ ସବୁ ଲୋକର ଶାସକ । ସମସ୍ତଙ୍କର ମାଲିକ । ସେ ଦୁଃଖ ଓ ପାପର ଆକ୍ରମଣରୁ ରକ୍ଷା କରନ୍ତି । ସେ ଶକ୍ତିଶାଳୀମାନଙ୍କ ମଧ୍ୟରେ ଶ୍ରେଷ୍ଠ । ସେ ବୈଦ୍ୟମାନଙ୍କ ମଧ୍ୟରେ ସର୍ବୋତ୍ତମ । ସେ ସରଳ ଓ ଉଦାର ହୃଦୟ । ସେ ସୁଖଦାୟୀ । ସହଜରେ ପ୍ରାର୍ଥନା ଶୁଣିଥା'ନ୍ତି । ସେ ସମସ୍ତଙ୍କୁ ସ୍ୱାସ୍ଥ୍ୟ, ଶୀତଳତା ଓ ଆରାମ ଦେଇଥା'ନ୍ତି । ସେ ଯୋଗ୍ୟ । ପୂଜନୀୟ । ସେ ପ୍ରଚୁରଦାତା । ସତ୍ୟସ୍ୱାମୀ । ତାଙ୍କର ଅସ୍ତ୍ର ଆମର ଶତ୍ରୁଙ୍କୁ ସଂହାର କରୁ । ସେ ପବିତ୍ର । ସେ ଅମର । ସେ ପରୋପକାରୀ । ଲୋକମାନ୍ୟ ତିଳକ କହନ୍ତି : ଶିବ ଓ ରୁଦ୍ର ଏକ ଦେବତା । କାଳକ୍ରମେ ହିନ୍ଦୁର ତ୍ରିମୂର୍ତ୍ତି ପ୍ରତୀତିରେ 'ରୁଦ୍ର' ଶବ୍ଦ ବଦଳରେ 'ଶିବ' ବା ମହେଶ୍ୱର' ଶବ୍ଦ ବ୍ୟବହୃତ ହେଲା ।

**ଅଗ୍ନି ହିଁ ରୁଦ୍ରଙ୍କ ସ୍ୱରୂପ :** ଡ଼ଃ ୱେବର କହନ୍ତି : ଶିବଙ୍କ ସ୍ୱରୂପ ଅଗ୍ନିରୁ ହିଁ ଉତ୍ପନ୍ନ । 'ଅଗୁ' (ଗତିଗମନୟୋଃ) ଧାତୁରୁ ଅଗ୍ନି ଶବ୍ଦ ନିଷ୍ପନ୍ନ । ଗତିର ତିନୋଟି ଅର୍ଥ : ଜ୍ଞାନ, ଗମନ ଓ ପ୍ରାପ୍ତି । ପୂଜନର ଅର୍ଥ ସତ୍କାର । ଯିଏ ଜ୍ଞାନ ସ୍ୱରୂପ ଓ ସର୍ବଜ୍ଞ, ଯିଏ ପ୍ରାପ୍ତି ଓ ପୂଜନର ଯୋଗ୍ୟ ସେ ଅଗ୍ନି । ଏ ସକଳ ଗୁଣ ଓ ଲକ୍ଷଣର ଅଧିକାରୀ ଈଶ୍ୱର ହୋଇଥିବାରୁ ତାଙ୍କର ନାମ ଅଗ୍ନି । ଋଗ୍ ବେଦର 'ତ୍ୱମଗ୍ନେ ରୁଦ୍ରୋ ଅସୁରୋ ମହାଦେବସ୍ତ୍ୱଂ(୨/୧/୧୬)ମନ୍ତ୍ରରୁ ଓ ଅର୍ଥବ ବେଦର ମନ୍ତ୍ରରୁ ରୁଦ୍ରଙ୍କର ଅଗ୍ନି ରୂପ ସିଦ୍ଧ ହୋଇଥାଏ । ଯଜୁର୍ବେଦରେ ବର୍ଣ୍ଣିତ ଅଛି ।

ହେ ଅଗ୍ନି ! ହେ ପ୍ରକାଶ ସ୍ୱରୂପ ପରମେଶ୍ୱର ! ବିଦ୍ୱାନ୍, ଜ୍ଞାନୀ ଓ ଯୋଗୀଜନ ଯେଉଁ ବୁଦ୍ଧି ପାଇଁ ଆପଣଙ୍କୁ ଉପାସନା କରନ୍ତି, ଦୟା କରି ବର୍ତ୍ତମାନ ସେହି ବୁଦ୍ଧି ମୋତେ ପ୍ରଦାନ କରନ୍ତୁ । ମହାଭାରତର ବନ ପର୍ବରେ ଉଲ୍ଲେଖ ରହିଛି : ରୁଦ୍ରମଗ୍ନି ଦ୍ୱିଜାଃ ପ୍ରାହୁଃ । ଅର୍ଥାତ୍ ରୁଦ୍ରଙ୍କୁ ବ୍ରାହ୍ମଣମାନେ ଅଗ୍ନି ବୋଲି କହିଥା'ନ୍ତି । ଶତପଥ ବ୍ରାହ୍ମଣରେ ରୁଦ୍ରଙ୍କୁ ସର୍ବାଗ୍ନି ।

**ସୂର୍ଯ୍ୟ ହିଁ ଶିବ :** ଶିବ ସୂର୍ଯ୍ୟଙ୍କ ସ୍ୱରୂପ । ଯିଏ ଚେତନ ଅଚେତନ ସମସ୍ତଙ୍କର ଆତ୍ମା ଏବଂ ଯିଏ ନିଜର ପ୍ରକାଶରେ ସକଳ ବ୍ରହ୍ମାଣ୍ଡକୁ ପ୍ରକାଶିତ କରନ୍ତି ସେ ସୂର୍ଯ୍ୟ ଅଟନ୍ତି । ପରମେଶ୍ୱର ହିଁ ଏହିପରି । ତେଣୁ ତାଙ୍କ ନାମ ସୂର୍ଯ୍ୟ (ସତାର୍ଥପ୍ରମାଶଃ) । ଅଥର୍ବ ବେଦର(୧୩/୧୪) ମନ୍ତ୍ରରେ

ଚନ୍ଦ୍ର, ସୂର୍ଯ୍ୟ ଓ ତାରା ଆଦି ସମସ୍ତ ମଣ୍ଡଳ ରୁଦ୍ରଙ୍କର ବଶବର୍ତ୍ତୀ ବୋଲି କୁହାଯାଇଛି । ଆଲୋକ ତାଙ୍କର ସ୍ୱରୂପ ଓ ତେଜ ତାଙ୍କର ସ୍ୱଭାବ ହୋଇଥିବାରୁ ସେ ଜ୍ୟୋତିର୍ବିନ୍ଦୁ । ଆତ୍ମଜ୍ଞାନ ବିଷୟରେ ଶିକ୍ଷା ଦେଇ ଉପାସକର ଜଡ଼ତାକୁ ଜାଳି ପାଉଁଶ କରି ଦିଅନ୍ତି । ପୂର୍ବୋକ୍ତ ଅଥର୍ବ ବେଦର ମନ୍ତ୍ରରେ ରୁଦ୍ରଙ୍କୁ ମହାଦେବ ବୋଲି କୁହାଯାଇଛି । ଯୋ ମହତାଂ ଦେବଃ ସଃ ମହାଦେବଃ । ଯିଏ ପିତା, ମାତା, ଆଚାର୍ଯ୍ୟ ଓ ବିଦ୍ୱାନ ଆଦି ଚେତନ ତଥା ଗ୍ରହ ନକ୍ଷତ୍ର, ଅଗ୍ନି ଓ ବାୟୁ ଆଦି ଜଡ଼ଦେବତାଙ୍କ ମଧ୍ୟରେ ମହାନ ଅର୍ଥାତ୍ ସର୍ବଶ୍ରେଷ୍ଠ ଓ ସର୍ବୋତ୍ତମ-ଏହିପରି ପରମାତ୍ମାଙ୍କ ନାମ ମହାଦେବ ବୋଲି ସ୍ୱାମୀ ଦୟାନନ୍ଦ ସରସ୍ୱତୀ ବ୍ୟାଖ୍ୟା କରିଛନ୍ତି । ପରବର୍ତ୍ତୀ ସାହିତ୍ୟରେ ରୁଦ୍ର ଓ ମହାଦେବ ଶିବ ରୂପେ ବର୍ଣ୍ଣିତ ହୋଇଛନ୍ତି ।

**ଶିବ ଶଙ୍କରଙ୍କଠାରୁ ଭିନ୍ନ :** ଶିବ କହିଲେ ମୁଖ୍ୟତଃ ଏକ ଜଟାଜୁଟଧାରୀ, ତପସ୍ୱୀ, କଣ୍ଠରେ ସର୍ପଧାରଣ କରିଥିବା ଏକ ଦେବ ପ୍ରତିମା ଦୃଶ୍ୟମାନ ହୁଏ । ତାଙ୍କୁ ଶଙ୍କର କୁହାଯାଏ । ପରମ ପିତା ପରମାତ୍ମା ନିରାକାର । ଶିବଲିଙ୍ଗ ଏହାର ପ୍ରତୀକ କିନ୍ତୁ ଶଙ୍କର ପ୍ରକାଶମୟ ଆକାରୀ ଦେବତା ଅଟନ୍ତି । ଶିବ ଯୋଗର ଈଶ୍ୱର ଅଟନ୍ତି । ଶଙ୍କର ଯୋଗୀ ମୂର୍ତ୍ତି । ଶିବ କର୍ତ୍ତା, ଶଙ୍କର କର୍ମ । ଶିବ ଧ୍ୟେୟ ଓ ଶଙ୍କର ଧ୍ୟାତା ।  ଶିବ ପିତା, ଶଙ୍କର ତାଙ୍କର ପୁତ୍ର । ଏ ପ୍ରସଙ୍ଗରେ ଏକ ମନୋରମ କାହାଣୀ ଅଛି । ଯେତେବେଳେ ବ୍ରହ୍ମା ସୃଷ୍ଟି ନିର୍ମାଣ କରିବାରେ ଅସଫଳ ହେଲେ ସେତେବେଳେ ସେ ନିର୍ଗୁଣ ବ୍ରହ୍ମ ସଦାଶିବଙ୍କ ଉପାସନା କଲେ । ବ୍ରହ୍ମାଙ୍କ ଉପାସନାରେ ସନ୍ତୁଷ୍ଟ ହୋଇ ପରମପିତା ଶିବ ବ୍ରହ୍ମାଙ୍କ ଭୃକୁଟିରୁ ଭଗବାନ ଶଙ୍କରଙ୍କ ରୂପରେ ଆବିର୍ଭୂତ ହେଲେ । ତ୍ରୟୋଦଶୀ ମଧ୍ୟ ରାତ୍ରିରେ ସେ ତାଣ୍ଡବନୃତ୍ୟ ଓ ମୃଦଙ୍ଗ ନାଦରେ ସ୍ୱଗୁଣ ପ୍ରଧାନ ସୃଷ୍ଟି ରଚନା କାର୍ଯ୍ୟ ଆରମ୍ଭ କଲେ ।

**ବିଷକୁ ନିଜ ଆୟତ୍ତରେ ରଖି ପରକୁ ଅମୃତର ସ୍ୱାଦ ଚଖାନ୍ତି ସଦାଶିବ :** ମନୁଷ୍ୟ ହୃଦୟ ଦେବ-ଅସୁର ସମସ୍ତ ବୃତ୍ତି ଦ୍ୱାରା ପୂର୍ଣ୍ଣ । ଯେତେବେଳେ ଯେକୌଣସି ମନ୍ଥନ ହୁଏ ନିୟମତଃ ପ୍ରଥମେ ଗରଳର ହିଁ ଆବିର୍ଭାବ ଘଟେ । ତାକୁ ଦେଖି ସମସ୍ତେ ଭୟଭୀତ ଓ ବିଚଳିତ ହୋଇପଡ଼ନ୍ତି । ବିଷ ହେଉଛି ସ୍ଥୂଳ, ଅମୃତ ହେଉଛି ସୂକ୍ଷ୍ମ । ବିଶ୍ୱର ସମସ୍ତ ସ୍ଥୂଳତ୍ୱର ସାର ହେଉଛି ମହାବିଷ ପ୍ରକଟ । ବିଷ ଉପରେ ଭାସୁଥାଏ । ତେଣୁ ସମୁଦ୍ର ମନ୍ଥନରୁ ଉଦ୍ଭୁତ ବିଷ ଶୀଘ୍ର ଚାରିଆଡ଼କୁ ବ୍ୟାପ୍ତ ହେବାକୁ ଲାଗିଲା । ସର୍ବସମର୍ଥ ସର୍ବେଶ୍ୱର ସଦାଶିବ ବ୍ରହ୍ମାଣ୍ଡକୁ ଆଶ୍ୱସ୍ତ କରିବା ପାଇଁ ନିର୍ବିକାର ଚିତ୍ତରେ ପାନ କଲେ । ତାହା ପ୍ରାଣଘାତକ ହୋଇଥିବାରୁ ନିମ୍ନକୁ ଯିବାକୁ ଦେଲେ ନାହିଁ । ଅନ୍ୟ ଏକ ପ୍ରସଙ୍ଗରେ ଉଲ୍ଲେଖ ଅଛି : ଭଗବାନଙ୍କ ସୃଷ୍ଟିରେ ବିଷ ମଧ୍ୟ ଏକ ସୃଷ୍ଟି । ତାକୁ ନିଷ୍ପ୍ରଭ ନ କରିବା ପାଇଁ ଅନୁରୋଧ କରନ୍ତେ ପରମ କାରୁଣିକ ଆଶୁତୋଷ ଶିବଙ୍କ ଗ୍ରୀବାଦେଶ ବିଷ-ଜ୍ୱାଳାର ପ୍ରଭାବରେ ନୀଳ ପାଲଟିଗଲା ସିନା ସେ ବିଷର ମାନ ରଖିଲେ । ବିଶ୍ୱକଲ୍ୟାଣକାରୀ ଶିବ ନୀଳକଣ୍ଠ ନାମରେ ପ୍ରସିଦ୍ଧ ହେଲେ । କାଳକୂଟକୁ ନିୟନ୍ତ୍ରଣରେ ରଖିଲା ପରେ ସମୁଦ୍ର ମନ୍ଥନ ଚାଲୁ ରହିଲା । ପରେ ପରେ ସୁନ୍ଦର ଅଲୌକିକ ଦିବ୍ୟ ପଦାର୍ଥମାନ ଅମୃତ ସହିତ ଉପଲବ୍ଧ ହେଲା । ଏହି ସମୁଦ୍ର ମନ୍ଥନ ପ୍ରସଙ୍ଗରୁ ଅନେକ ସଙ୍କେତ ମିଳିଥାଏ । ବିକାରର କାରଣ ଉପସ୍ଥିତ ଥିଲେ ମଧ୍ୟ ଯାହାର ଚିତ୍ତ ବିକାରଗ୍ରସ୍ତ ହୁଏ ନାହିଁ, ସେ ହିଁ ଧୀର । ସେ ମହାନ୍ । ଦେବଦାନବମାନବ କୁଳର କଲ୍ୟାଣକୁ ଆଖି ଆଗରେ ରଖି ସେ ମନ୍ଦରୂପକ ବିଷକୁ ନିଜେ ପାନ କରି ଜୀବଗଣଙ୍କୁ ଅମୃତାନନ୍ଦ ଭୋଗ କରିବାର ସୁଯୋଗ ଦେଇଥିଲେ । ଏହା ହିଁ ଜୀବନ ରୂପକ ସମୁଦ୍ରମନ୍ଥନର ବାର୍ତ୍ତା ବହନ କରିଥାଏ ।

**ଅଜ୍ଞାନତାର ମହାନିଦ୍ରାରୁ ଉଠିବା ହିଁ ପ୍ରକୃତ ଜାଗରଃ** ମହାଶିବରାତ୍ରିରେ ରାତ୍ରିର ପୃଷ୍ଠଭୂମି ଗୁରୁତ୍ୱ ବହନ କରେ । ସାଧାରଣତଃ ରାତ୍ରି ଅନ୍ଧକାରର ପ୍ରତୀକ ହୋଇଥିବାରୁ ଅମାବାସ୍ୟାର ରାତ୍ରି ଘନଘୋର ଅନ୍ଧକାରର ସୂଚନା ଦେଇଥାଏ । ଆଲୋକର ତେଜ ଔଜଲ୍ୟ ଓ ଜ୍ଞାନ ପ୍ରଦାନ କଲାବେଳେ ଅନ୍ଧକାର ଜଡ଼ତା ଓ ଅଜ୍ଞାନତାର ପ୍ରତିନିଧିତ୍ୱ କରେ । ରାତ୍ରି ତମୋଗୁଣର ପର୍ଯ୍ୟାୟବାଚୀ ଅଟେ । ମଣିଷ ଆତ୍ମବିସ୍ମୃତ ହୋଇ ଏକ ଶବସମ ପଡ଼ି ରହେ । ତମୋଗୁଣରେ ପରିପୂର୍ଣ୍ଣ ଆଳସ୍ୟରେ ବୁଡ଼ି ରହେ । ସୁକର୍ମ ଅପେକ୍ଷା କୁକର୍ମ ଅଧିକ ସମ୍ପାଦିତ ହୁଏ । ଅଧିକ ପାପ, ସକଳ ପ୍ରକାର ଅନ୍ୟାୟ,ବ୍ୟଭିଚାରର ମାତ୍ରା ବୃଦ୍ଧିପ୍ରାପ୍ତ ହୋଇଥାଏ । ଏହିଭଳି ମହାନିଶାର ଅଜ୍ଞାନତାର ନିଦ୍ରାରେ ସୁପ୍ତ ମାନବାତ୍ମାକୁ ଜ୍ଞାନ ଦ୍ୱାରା

ଜଗେଇବା ହେଉଛି ପ୍ରକୃତ ଜାଗର । ରାତ୍ରିର ଧନାତ୍ମକ ଓ ଋଣାତ୍ମକ ଉଭୟ ପକ୍ଷ ରହିଛି । ରାତ୍ରି ମଣିଷ କାର୍ଯ୍ୟକଳାପର ସାକ୍ଷୀ । ସୂର୍ଯ୍ୟ, ଚନ୍ଦ୍ର, ପବନ, ଅଗ୍ନି, ଆକାଶ, ଭୂମି,ଜଳ, ହୃଦୟ, ଯମ, ଦିନ, ରାତି, ଉଭୟ ସନ୍ଧ୍ୟା ତଥା ଧର୍ମ ମଣିଷର ବୃତ୍ତାନ୍ତ ଜାଣନ୍ତି । 'ରା' ଧାତୁରୁ ରାତ୍ରି ଶବ୍ଦର ଉଦ୍‌ଗମ । 'ରା' ଅର୍ଥ ଦାନ କରିବା । ରାତ୍ରି ବିଶ୍ରାମଜନିତ ସୁଖ ଓ ଆନନ୍ଦ ପ୍ରଦାନ କରେ ।

ଫାଲଗୁନ ମାସର କୃଷ୍ଣ ପକ୍ଷ ଚତୁର୍ଦ୍ଦଶୀ ରାତ୍ରି ମହାଶିବ ରାତ୍ରି ଅଟେ । ଆଧ୍ୟାତ୍ମିକ ଦୃଷ୍ଟିରେ ସତ୍ୟ ଓ ତ୍ରେତୟା ଯୁଗକୁ ଦିନ ଅଥବା ଶୁକ୍ଳପକ୍ଷ ବୋଲି କୁହାଯାଇଥିବା ବେଳେ ଦ୍ୱାପର ଓ କଳିଯୁଗକୁ ରାତ୍ରି ଅଥବା କୃଷ୍ଣପକ୍ଷ କୁହାଯାଏ । ମାନବଗଣ ଅକଥନୀୟ ଦୁଃଖ, ଅସହ୍ୟ ଯାତନା ଓ କଷ୍ଟଦାୟକ ଅଶାନ୍ତିରେ ଆତୁର ହୋଇ ପ୍ରାର୍ଥନା କରନ୍ତି । ରାତ୍ରିକ ଚାରୋଟି ପ୍ରହର । ଦ୍ୱିତୀୟ ପ୍ରହରର ଶେଷ ଓ ତୃତୀୟ ପ୍ରହରର ଆରମ୍ଭ ଅର୍ଥାତ୍ ଠିକ୍ ମଧ୍ୟରାତ୍ରିରେ ଜଗତର ଉଦ୍ଧାର କର୍ତ୍ତା କଲ୍ୟାଣମୟ ସଦାଶିବ ମନୁଷ୍ୟମାନଙ୍କୁ ପରିତ୍ରାଣ କରିବା ପାଇଁ ଜ୍ୟୋତିର୍ଲିଙ୍ଗ ରୂପରେ ଆବିର୍ଭୂତ ହୁଅନ୍ତି । ଈଶ୍ୱରୀୟ ଜ୍ଞାନ ପ୍ରଦାନ କରି ଜୀବମାନଙ୍କୁ ସ୍ୱପ୍ରଧାନ କରାଇ ପବିତ୍ର କରନ୍ତି । ସେଥିପାଇଁ ଭକ୍ତଗଣ ସାରା ରାତି ଉଜାଗର ରହି ଜାଗର ଜାଳି ପରମେଶ୍ୱରଙ୍କୁ ଆବାହନ କରନ୍ତି । 'ଜାଗର' ଅର୍ଥ ଜାଗରଣ । ଆତ୍ମଜାଗରଣରେ ପ୍ରବୁଦ୍ଧ ହୁଅନ୍ତି ଉପାସକଗଣ ।

ପୁଷ୍ପ, ଚନ୍ଦନ, ବିଲ୍ୱପତ୍ର ଅର୍ପଣ ଶିବ ନାମ ଜପ ଧ୍ୟାନ ଦ୍ୱାରା ଚିତ୍ତବୃତ୍ତିକୁ ନିରୋଧ କରି ପରମାତ୍ମା ଶିବଙ୍କ ସହିତ ଯୋଗ କରିବା ହିଁ ଶିବପୂଜା । ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ କର୍ମେନ୍ଦ୍ରିୟ ତଥା ମନ, ବୁଦ୍ଧି, ଅହଂକାର-ଏହି ଚତୁର୍ଦ୍ଦଶର ସମୁଚିତ ନିରୋଧ ହିଁ ଚତୁର୍ଦ୍ଦଶୀ ଶିବରାତ୍ରି ବ୍ରତ । ଶିବପୂଜା ଅର୍ଥ ଆତ୍ମକଲ୍ୟାଣ ସହିତ ଜଗତକଲ୍ୟାଣର ସାଧନା କରିବା ।

ସୌନ୍ଦର୍ଯ୍ୟ ଉପାସନା ମଣିଷର ଏକ ସ୍ୱଭାବିକ ଗୁଣ ଅଟେ । ପ୍ରାୟ ପ୍ରତ୍ୟେକ ମଣିଷର ହୃଦୟରେ ନିଜ ଜୀବନକୁ ଆକର୍ଷକ, ପ୍ରଭାବଶାଳୀ ଓ ସୌନ୍ଦର୍ଯ୍ୟଯୁକ୍ତ କରି ଗଢି ତୋଳିବାର ଆକାଂକ୍ଷା ରହିଥାଏ । ଜଗତର କଲ୍ୟାଣକାରୀ କଲ୍ୟାଣସ୍ୱରୂପ ମଙ୍ଗଳମୂର୍ତ୍ତି ସଚ୍ଚିତ୍ ଆନନ୍ଦମୟ ସଦାଶିବ ହେଉଛନ୍ତି ଅନନ୍ତ ସୌନ୍ଦର୍ଯ୍ୟର ପ୍ରତିନିଧି । ସୌନ୍ଦର୍ଯ୍ୟତତ୍ତ୍ୱର ବିଶେଷଜ୍ଞ ବିଦ୍ୱାନ୍ ଆର୍. ଟୋଫର କହନ୍ତି : God is beauty and ideas of beauty in us are divine attributes there, ଅର୍ଥାତ୍ ସୌନ୍ଦର୍ଯ୍ୟ ପ୍ରଭୁଙ୍କର ଅଟେ । ମାନବ ଜୀବନରେ ଏହାର ପ୍ରତିଷ୍ଠା କରିବା ଅର୍ଥ ଏକ ଦିବ୍ୟତମ ସ୍ୱର୍ଗୀୟ ଆଶୀର୍ବାଦର ସତ୍କାର କରିବା ଅଟେ । ଶିବଙ୍କ ସୌନ୍ଦର୍ଯ୍ୟ ଆମ ବ୍ୟକ୍ତିତ୍ୱରେ ଝଲସି ଉଠୁ । ଶିବରାତ୍ରି ପାଳନର ବିଚାର ଆମ୍ଭମାନଙ୍କର ଜୀବନଯାତ୍ରାକୁ ଦୀପ୍ତିମୟ କରୁ ଏବଂ ନିଜର ବିକାଶ ପାଇଁ ସତ୍ ସାହସ ଯୋଗାଉ ।

ପ୍ଲଟ୍ ନଂ.୨୭୫- ଏମ୍.ଆଇ.ଜି
କାନନ ବିହାର, ଫେଜ୍-୨, ପଟିଆ
ଭୁବନେଶ୍ୱର-୭୫୧୦୩୧



# କଥିତ ଶବ୍ଦର ବ୍ୟଙ୍ଗ ଭାଷ୍ୟକାର : ଫତୁରାନନ୍ଦ

ଡକ୍ଟର ସଂଘମିତ୍ରା ଭଞ୍ଜ

ହାସ୍ୟ ଉଦ୍ରେକକାରୀ ସାରସ୍ୱତ-ମହୌଷଧି ଦ୍ୱାରା ପ୍ରବୃତୀୟ-ସର୍ବରୋଗ ନିରାକରଣକାରୀ ଫତୁରାନନ୍ଦ ଓଡିଆ ସାହିତ୍ୟରେ ଦିବ୍ୟ-ଧନ୍ୱନ୍ତରୀ । ପ୍ରତି ଯୁଗେ ମଣିଷ ଜୀବନରେ ଦୁଃଖ ଏବଂ ଯନ୍ତ୍ରଣାର ଅଭାବ ନାହିଁ ଅବା ସଂଘର୍ଷର ଅନ୍ତ ନାହିଁ । ବହୁ ମରୀଚିକା ଭିତରେ ଦିଗ୍‌ଭ୍ରାନ୍ତ ମଣିଷ ବିସ୍ମରି ଦିଏ ତା'ର ଶେଷ ହସର ତାରିଖ । ହସିବା ପାଇଁ ବି ଦର୍ପଣ ସମ୍ମୁଖରେ ତାକୁ ନିୟମିତ ଗୁପ୍ତ-କସରତ କରିବାକୁ ହୁଏ । କୃତ୍ରିମ ଜୀବନଚର୍ଯ୍ୟା ଭିତରେ ମୁଖାପିନ୍ଧା ମଣିଷର ହସ ପ୍ଲାଷ୍ଟିକ୍‌ର, ଆଚରଣ ବିରୋଧାଭାସପୂର୍ଣ୍ଣ । ବାହାରଟା ଗୋଟାଳ ଦିଶୁଥିଲେ ହେଁ ଭିତରଟା ଫମ୍ପା-ଆଡମ୍ବରିତାରେ ଶୂନ୍ୟ ! ସମସ୍ତେ ହସି ପାରନ୍ତିନି କି ହସେଇ ପାରନ୍ତିନି । ଅବସାଦ, କ୍ଷୋଭ, ଦମ୍ଭ, ଅଶ୍ରୁ, ଈର୍ଷା ଦେଇ ଧାରେ ମୁକ୍ତହସ କ'ଣ ସମ୍ଭବ ? ମିଥ୍ୟା ଦାମ୍ଭିକତା ଭିତରେ ଜୀବନରେ ଶେଷ ହସଟି ଯେ କେବେ ହସିଥିଲା, ତାହା ଭାବିବାକୁ ପଡେ । ଅଧୁନା ଯୁଗରେ ଯାହାର ସତ୍ ସାହସ ଥିବ ସେ ହିଁ ହୃଦୟ ଖୋଲି ହସିପାରିବ ଏବଂ ହସେଇ ପାରିବ । କେବଳ ସାହସ ଥିଲେ ବି ହେବ ନାହିଁ, ଅପର ମଣିଷ ପ୍ରତି ସତସତିକା ସହାନୁଭୂତି-ସମ୍ବେଦନା ଏବଂ ଅସୀମ କରୁଣା ଥିଲେ ହିଁ ଏ ହସେଇବା କର୍ମଟି ଉତ୍ତରିତ ହୁଏ ।

ମଣିଷକୁ ମହାନ୍ କରେ ମଣିଷପଣିଆ ଏବଂ ଏହି ମଣିଷପଣିଆ ହିଁ ଫତୁରାନନ୍ଦଙ୍କ ପାଇଁ ଶ୍ରେଷ୍ଠ ଉପଲବ୍ଧି । କଥାସମ୍ରାଟ୍ ଫକୀରମୋହନଙ୍କ ପରେ ମଣିଷପଣିଆକୁ ନୂଆ ବାଗରେ ପରିଚିତି ଦେବା ନିମିତ୍ତ ହାସ୍ୟ-ବ୍ୟଙ୍ଗର ନିଆରା ଶୈଳୀକୁ ପାଥେୟ କରିଥିବା ହୃଦୟବାନ୍ ଫତୁରାନନ୍ଦ ଜଣେ ଯଶସ୍ୱୀ ବ୍ୟକ୍ତିତ୍ୱ । ବ୍ୟଙ୍ଗ ଦରବାରର ସେ ଜଣେ ଶ୍ରେଷ୍ଠ ବିଦୂଷକ ! ପ୍ରାଜ୍ଞ-ରସିକ ।

ବିଜ୍ଞାନର ନୀରସ ବଳୟରୁ ସାହିତ୍ୟର ରସାଳ ପରିସରକୁ ଗତି କଲାବେଳେ ଅତି ଯତ୍ନର ସହିତ ବ୍ୟଙ୍ଗଶୈଳୀ ମାଧ୍ୟମକୁ ସମ୍ପୁଟ କରି ସୃଷ୍ଟି କରିଛନ୍ତି ଏକ ଦିବ୍ୟ-ହାସ୍ୟାଲୋକ । ଜୀବନ-ମଣିଷ ଏବଂ ସାହିତ୍ୟକୁ ଭଲପାଇବାର କି ଅନନ୍ୟ ପରିଭାଷା ତାଙ୍କ ପାଖରେ ସତେ ! ପେଟରେ ପେଟେ ଆର୍ତ୍ତ-ଯନ୍ତ୍ରଣାକୁ ଚାପିଦେଇ ଓଡିଆ ପାଠକଙ୍କୁ ଖୋଲା ହସର ଆବର୍ତ୍ତ ଭିତରେ ସଂଖୋଳିବାର କି ସମର୍ପିତ ସାଧନା ସତେ! ସେ ନିଜର ଐଶୀ ଲେଖନୀ ଦ୍ୱାରା ଅତି ଚମତ୍କାର ଢଙ୍ଗରେ ତ୍ରିକର୍ମ ସମ୍ପାଦନା କରିଛନ୍ତି । ପ୍ରଥମତଃ ମଣିଷକୁ ରସେଇଛନ୍ତି-ହସେଇଛନ୍ତି, ଦ୍ୱିତୀୟତଃ ସାହିତ୍ୟକୁ ସଂସ୍କାରଯୁକ୍ତ କରିଛନ୍ତି ଏବଂ ସର୍ବଶେଷରେ ସାମାଜିକ ଦାୟିତ୍ୱବୋଧକୁ ଦୃଷ୍ଟି ସମ୍ମୁଖରେ ରଖି ପ୍ରବୃତ୍ତି ସଂଶୋଧନର ଗୁରୁ ଦାୟିତ୍ୱବୋଧକୁ ନିର୍ବାହ କରିଛନ୍ତି । ବିରୋଧାଭାସପୂର୍ଣ୍ଣ ମଣିଷର ଦ୍ୱୈତ ମାନସିକତା (Dual intensity)କୁ ବ୍ୟଙ୍ଗ କରିବା ପଛରେ ମଣିଷକୁ ହୃଦୟ ଦେଇ ଭଲପାଇଛନ୍ତି । ଏହି ସାରସ୍ୱତ ବ୍ୟଙ୍ଗଶୈଳୀର ପ୍ରୟୋଗକର୍ତ୍ତା ରୂପେ ଫତୁରାନନ୍ଦ ଅନତିକ୍ରମ୍ୟ । ତାଙ୍କ ପରିଚୟ ସେ ନିଜେ । ଏକମାତ୍ର ଉପନ୍ୟାସ 'ନାକଟା ଚିତ୍ରକର', ଅଜସ୍ର ହାସ୍ୟରସାତ୍ମକ ଗଳ୍ପ ଯଥା- ହେରେସା, ସାହିତ୍ୟ ଚାଷ, ବିଦୂଷକ, ମଙ୍ଗଳବାରିଆ ସାହିତ୍ୟ ସଂସଦ, ହସକୁରା, ମସ୍କରା, ବୃହତଭାଣ୍ଡ, ଟାପୁରିଆ, ଟାହୁଲିଆ, ମୁଚୁକୁନ୍ଦିଆ, ଖିଲିଖିଲିଆ, ଅମୃତବେହିଆ, ଭୋଟ, ଗମାତ, ନିଦାବେହେଲ,

ଥଟକରିବାଜ, ସାହିତ୍ୟ ବେଉଷଣ, ନବଜିଆ ଇତ୍ୟାଦିର ସ୍ରଷ୍ଟା ସେ।

କଥାଶିଳ୍ପୀ ଫତୁରାନନ୍ଦ ତାଙ୍କ ରଚନାର ଛତ୍ରେ ଛତ୍ରେ ଯେଉଁ ହାସ୍ୟରସର ସୁଅ ଛୁଟାଇଛନ୍ତି, ତନ୍ମଧ୍ୟରେ ଆଧୁନିକ କଥା ସାହିତ୍ୟର ବିଭବ ପରିପୂର୍ଣ୍ଣ। ଗୋଟିଏ ଗଳ୍ପ ସେତିକିବେଳେ ସାର୍ଥକ ରୂପ ଗ୍ରହଣ କରେ ଯେତେବେଳେ ତା'ର ବାହ୍ୟ ରୂପ ଏବଂ ଅନ୍ତଃରୂପ ଉଭୟେ ସାହିତ୍ୟକୁ ଆଧାରକରି ସୁଚାରୁରୂପେ ଅଭିବ୍ୟକ୍ତି ଲାଭ କରିଥାଏ । ଏହି ବୈଧାନିକ ରୀତିରେ ଫତୁରାନନ୍ଦଙ୍କ କ୍ଷୁଦ୍ରଗଳ୍ପ ଜଗତଟି ଗଢ଼ିଉଠିଛି। ଆଲୋଚନାର ସୁବିଧା ଦୃଷ୍ଟିରୁ ତାଙ୍କ କ୍ଷୁଦ୍ରଗଳ୍ପର ବିଭବଗୁଡ଼ିକୁ ଦୁଇଗୋଟି ପର୍ଯ୍ୟାୟରେ ଆଲୋଚନା କରାଯାଇଛି। ପ୍ରଥମତଃ ଆଙ୍ଗିକ ଏବଂ ଦ୍ୱିତୀୟଟି ଆତ୍ମିକ।

**ଆଙ୍ଗିକ ବୈଶିଷ୍ଟ୍ୟ :**

ଭଲଭାବରେ କଥା କହି ପାରୁଥିବା ଏବଂ ଚିନ୍ତା କରିପାରୁଥିବା ଛୋଟା କେମ୍ଫା ମଣିଷଟିଏ ଦେଖିଲେ ଯେମିତି ଭଗବାନ୍‌ଙ୍କ ସୃଷ୍ଟିରେ ଦରଗଡ଼ା ଭଳି ଲାଗେ, ଠିକ୍ ସେହିପରି ଗୋଟିଏ ସୁନ୍ଦର ଗଳ୍ପର କେତୋଟି ଆଙ୍ଗିକ ଅଭାବ ହେତୁ ସ୍ରଷ୍ଟାର ଦୁର୍ବଳ ଦିଗକୁ ପାଠକ ଛାଏଁ ଅଙ୍ଗୁଳି ନିର୍ଦ୍ଦେଶ କରିବସେ। ଦରଗଡ଼ା ପିତୁଳା ପରି ତାହା ପାଠକ ସମାଜରେ ସମାଲୋଚିତ ହୋଇଯାଏ। ତେଣୁ ସ୍ରଷ୍ଟା ତା'ର ସୃଷ୍ଟିର ପ୍ରାରମ୍ଭରୁ ଶେଷ ପର୍ଯ୍ୟନ୍ତ ତା'ର ଆଙ୍ଗିକ ଦିଗପ୍ରତି ଯଥେଷ୍ଟ ସଚେତନ ହୋଇଥାଏ। ଏହି ଦୃଷ୍ଟିରୁ ବିଚାର କଲେ, ଗାଳ୍ପିକ ଫତୁରାନନ୍ଦ ତାଙ୍କର ଅଜସ୍ର ଗଳ୍ପର ପରିସର ମଧ୍ୟରେ ଗୋଟିଏ ଶକ୍ତ ସୁସ୍ଥ ବୁଦ୍ଧି ସହିତ କଳାତ୍ମକ ହାତଟି ଚାଳନା କରିଥିବାର ଜଣାପଡ଼େ।

ଆଧୁନିକ କ୍ଷୁଦ୍ରଗଳ୍ପ ଜଗତର ଏକ ବ୍ୟତିକ୍ରମ ହେଉଛି ଫତୁରାନନ୍ଦଙ୍କ ଗଳ୍ପ ସାହିତ୍ୟ । ଏହାର ଆଙ୍ଗିକ ବିଭବ ଅତ୍ୟନ୍ତ ହୃଦୟାକର୍ଷୀ ଓ ଅନନ୍ୟ। ତାଙ୍କର କ୍ଷୁଦ୍ରଗଳ୍ପଗୁଡ଼ିକରେ ଶବ୍ଦ, ପଦ, ବିଭକ୍ତି, ବ୍ୟାକରଣର ପ୍ରୟୋଗ, ଭାଷା, ନାମକରଣରେ ସ୍ୱାତନ୍ତ୍ର୍ୟ, ପରିବେଶ, ଗଳ୍ପ ଉପାଦାନ, ଶୈଳୀ, ସଂଳାପ, ଚରିତ୍ର, ବିଷୟବସ୍ତୁ କିମ୍ବା ଘଟଣା ପ୍ରସଙ୍ଗ, ଗଳ୍ପର ପରିବେଷଣ, ଗତି ଏବଂ ପରିଣତି, ଦ୍ୱନ୍ଦ୍ୱ ଏବଂ ସଂଘାତ ପ୍ରଭୃତି ଗୋଟିଏ ଗୋଟିଏ ଚମତ୍କାର ଆଙ୍ଗିକ ରୂପ ଗ୍ରହଣ କରିଛନ୍ତି।

**ଶବ୍ଦ :**

ଫତୁରାନନ୍ଦ ଆଧୁନିକ ଓଡ଼ିଆ ହାସ୍ୟ ବ୍ୟଙ୍ଗ ସାହିତ୍ୟ ରାଜ୍ୟର ଅପୂର୍ବ କାରିଗର। ଫତୁରାନନ୍ଦଙ୍କ ଗଳ୍ପ ଜଗତରେ ଶବ୍ଦର ଚାତୁର୍ଯ୍ୟ ଗଳ୍ପର ପରିସରକୁ ଅଧିକ ବିଷୟଧର୍ମୀ ଓ ହାସ୍ୟ-ବ୍ୟଙ୍ଗ ପରିପୂର୍ଣ୍ଣ କରିଛି। ଶବ୍ଦ ପ୍ରୟୋଗରେ ତାଙ୍କର ନିତ୍ୟ-ନୂତନ ସ୍ରଷ୍ଟା ଗୁଣଟି ଆପେ ବାରି ହୋଇପଡ଼େ। ଯଥା : ତିର୍ଲା 'ନାଇଲନ୍', 'ଗବଗବ', 'ବଦର', 'ହା ହା', 'କୁଛେଇ', 'ନେହୁରା', 'ଉଦଣ୍ଡୀ', 'ଗନ୍ଧିଆ, 'ଆଡୁଆଳ', 'ଜୁଲମ', 'ତାରିଫ୍', 'ଜାଚନ', 'ସୁରାକ୍', 'ବାସୁଳେଇ', 'ୟାଡ଼କୁ', 'ବୁଲାଷଣ୍ଢ', 'ନାଲା', 'ଓପାଡି', 'ପୁଅ ବିକା', 'ଭଣ୍ଡାରୀ', 'ଲେଙ୍ଗଡ଼ା', 'ମୋହରିର', 'ଧୁମ୍‌ଧଡ଼ାକ୍', 'ଜିତାପଟ', 'ଦୁରଦୁର୍', 'ଧୂମୁସା', ଶିଶୁପାଳ', 'ତାକତ', 'ଇଲମ୍', 'ଖୋଦ୍', 'ବାସ୍',ଦ'ଫଏସଲା', 'ଖିଲିଖିଲିଆ', 'ଘୋଷଡ଼ା', 'ବିଲକୁଲ', 'ପରମିଟ୍', 'ବିଲାକ୍' (ବ୍ଲାକ୍‌ଦ), 'ମେଟଲି', 'ମାଷ୍ଟର'. 'ଉଣା', 'ନିପଟ', 'ଚଷା', 'ଭାରଯା', 'ମାଦଳମୁଣ୍ଡା', 'ସତସତିଆ', 'ଲଟପଟ', 'ଲଗେଇ ଜୁଟେଇ', 'ଚଟାପଟ', 'ମୁରୁକିହସା', 'ଲମ୍ବା କଲିଆ', 'ମୁଦୁକ', 'ପାହୁଲାକର', 'ଓଷଦ', 'ମାଉଁସ', 'କଟ୍‌ଲେଟ୍', 'କାରପଟ୍ ଦାସ', 'ସାଫସାଫ୍', 'ଛକାଛକି', 'ବଡ଼ ପାଟିଆ'(ମାଇକ୍), 'ଓଲଟପାଲଟ' (ଭୋଟ), 'ହାମ୍ପେଇ', 'ଖଇରାତ', 'ବସ୍ତାନି', 'ମାରୁଆଡ଼ିପଟି', 'ଭୁଲ୍‌ଚୁକ୍', 'କୁରୁକୁରିଆ', 'ତହବିଲ୍', 'ତୋଷରଫ୍', 'ଲାଜୁରା', 'ପଙ୍ଗତ', 'ଫରାକତ', 'ଖୁନ୍ଦାଖୁନ୍ଦି', 'ଭେଜାଲ', 'ଘରଘର୍', 'ଗରଗର୍', 'ହଗନ୍ତୁ', 'ତର୍ଜନଗର୍ଜନ' ଇତ୍ୟାଦି (ସାହିତ୍ୟ ବଛାବଛି)। 'ପାକୁଆ', 'ମୁଡ଼', 'ବାକରୁଦ୍ଧ', 'ପାଷାଣ୍ଡ', 'କିଳିକିଳା', 'ଝଟିକା', 'ଉଲଗା', 'ହୋ ହା', 'ଦଶମାସିଆ', 'କିସ୍ତିମାଡ଼' ଇତ୍ୟାଦି... (ସାହିତ୍ୟଚାଷ) ଘୁଉଁଉଁ, ନାପସନ୍ଦ, ହର୍ଥ ଆଣ୍ଠୁକୁଡା, ଘୁଷୁରିଆ, ଭସାକଟୋମି, ହେଃ, ହଟହଟ୍, ବାରଚାଉଳିଆ, ଅତର୍ଚ୍ଛ, ଚିକିଟା, ଖାଣ୍ଟି, ଉଣ୍ଡିବା, ଟପଟପ, ଖୁଞ୍ଚା, ଓଲଟା, ତୋଡ଼, ଫା, ପିଜୁଡ଼ି ଇତ୍ୟାଦି (ନିଦା ବେହେଲ) ।

ଫତୁରାନନ୍ଦ, ଶବ୍ଦର ସଂଯୋଜନାରେ ଅନେକତ୍ର ବିଦେଶୀ ଶବ୍ଦ ଯଥା : (ଇଂରେଜ ଡ଼ଚ୍, ଓଲନ୍ଦାଜ୍, ଗ୍ରୀକ୍, ଫରାସୀ ପ୍ରଭୃତି), ମୋଗଲ, ସଂସ୍କୃତ, ହିନ୍ଦୀ, ବଙ୍ଗଳା, ଅପଭ୍ରଂଶ

ଓଡ଼ିଆ, କଥିତ ଗାଁ ଗହଳିର ଲୋକତୁଣ୍ଡର ଶବ୍ଦ ପ୍ରଭୃତିକୁ ଭିନ୍ନ ଭିନ୍ନ ପ୍ରସଙ୍ଗରେ ପ୍ରୟୋଗ କରିଥିବାର ଦେଖାଯାଇଥାଏ। ବାଡ଼ିପୋଡ଼ା, ଗାତପଶା, ସାପଖିଆ, ଅଣ୍ଡିରାଚଣ୍ଡୀ, (ଗାଉଁଲି ଲୋକମୁଖର ଶବ୍ଦ)। ଖାଏଁଗା ନହିଁ, 'ଦେଖ୍ ଲେଙ୍ଗାଦ ଡ଼ାକୁ କେ ବଚ୍ଚେ, କୁଛ୍ କରଙ୍ଗା ନେହିଁ (ହିନ୍ଦୀ ଶବ୍ଦ), ଏଫ୍ ଏ, ମାଟ୍ରିକ୍, ଫିଲ୍ମ ସେନ୍ସର୍ ଇତ୍ୟାଦି (ଇଂରାଜୀ ଶବ୍ଦ) ବ୍ୟତୀତ ଫତୁରାନନ୍ଦ ଖାଣ୍ଟି ଓଡ଼ିଆ ଶବ୍ଦ ଯାହା ଆଭିଧାନିକ ରୂପ ଗ୍ରହଣ କଲେ ମଧ୍ୟ ବିଦେଶୀ ପ୍ରଭାବରେ ସଂପ୍ରତି ଲୋକମୁଖରୁ କ୍ରମେ ଅପସୃତ ହୋଇଯାଉଛି, ସେସବୁକୁ ଖୁବ୍ ସ୍ପଷ୍ଟ ଓ ଜୀବନ୍ତ ଭାବରେ ତାଙ୍କର କ୍ଷୁଦ୍ରଗଳ୍ପରେ ବର୍ଣ୍ଣନା କରିଛନ୍ତି ।

**ପଦ :**

ଫତୁରାନନ୍ଦ ତାଙ୍କ କ୍ଷୁଦ୍ରଗଳ୍ପଗୁଡ଼ିକରେ ଶବ୍ଦର ଅଭିନବ ସଂଯୋଜନା କରି ପଦଗୁଡ଼ିକର ଅତ୍ୟନ୍ତ ଚମତ୍କାର ପ୍ରୟୋଗ କରିଛନ୍ତି। ଶବ୍ଦର ସମାହାରରେ ପଦର ସୃଷ୍ଟି। ତେଣୁ, ଗାଳ୍ପିକଙ୍କ ଗଳ୍ପଗୁଡ଼ିକର ପଦଗୁଡ଼ିକ ଅନୁକରଣଧର୍ମୀ ହୋଇଥିବାରୁ ଏଥିରେ କେତେକ ବ୍ୟତିକ୍ରମ ଉପଲବ୍ଧ ହୁଏ । ଯଥା : 'ଟାଇଁଟାଇଁଆ ଖରାଦିନ', 'ଷୋଳକଳାରେ ପରିପୂର୍ଣ୍ଣ', 'ଗୋଟିଏ ନିଖୁଁଣ ଗୋଲଗାଲ୍ ଆଳୁ', 'ମୋଚିଙ୍କ ବୋକଚ ବୁହା', 'କି ମୁସ୍କିଲ୍ ଲୋକ', 'ହଇରେ ବାଳୁଙ୍ଗା', 'ଅଲକ୍ଷଣା', 'ଛତରା', 'ଅବାଇଜ', ମାର୍ ଶଳାକୁ ଧର ଶଳାକୁ, ଇହି–ହି–ହି–ହି ପ୍ରାଣ ଗଲା, ଇଲୋ ବୋପାଲୋ, ଅନଲକି କରି ଚାଲିଆ, ଏଁ ଏଁ ଷ୍ଟ୍ରାଇକ୍ କୋଉଦିନ। ହଁ, ହଁ, ସବୁର କର ସବୁର କର୍, ହେଇଟିତ ବାବୁ ଇତ୍ୟାଦି।

ଚିଠିର ମୁଣ୍ଡକୁ ଚାହିଁଲି, ବଦମାସିଆ ଚଠିଟାଏ ଲେଖିଛି, ହାତୀଲାଙ୍ଗୁଡ଼ ମାଧ୍ୟମରେ, ଭୈରବୀ ରାଗରେ ଆଳାପ, ବ୍ରଣ ମିଛନ୍ତି ମକ୍ଷିକାଃ, ପେଣ୍ଟଟା ବିଲୁକୁଲ୍ ନଳିଆ ନୁହେଁ, ଭୀତପ୍ରଦ ଲମ୍ବା କଳି ଓ ଗୁଣ୍ଡୁଚିଆ ନିଶ, ଧୁମୁସା ଧୁମୁସା ଭେଣ୍ଡିଆ, ଅପାଠ ପୁରରେ '୦' ବୁଲିଗଲା, ୱାଉ, ୱାଉ, ୱାଉ ନାହିଁ ନାହିଁ ମୋର ନାହିଁ ଇତ୍ୟାଦି। ସ୍ନେହରେ ଜୁତୁକୁତୁ, ସୁନ୍ଦର ଭେଣ୍ଡିଆ ଓ ଭେଣ୍ଡିଆଣୀ, କାନରେ ଦୁଇ ଆଙ୍ଗୁଠି ଭର୍ତ୍ତିକରି, ଦଶ ସେରିଆ ବାର ସେରିଆ ମାଛ ଇତ୍ୟାଦି। 'ହେଇଟି ପରା', ପେଟ କଥା ପେଟରେ ରଖି, ସାରୁ ଖୋଳ ଅଧ୍ୟାପକଟା, କାଶିଆ କପିଳା ଭେଟ, ଦୂର୍ ଓଲୁ, ଅସଲି କଂଡୁ ଦାବାନଳ, ପକ୍କା ଟାଉଟର, ପକ୍କା ଚାରିଶ ବିଶ, ହିଡ଼ମ୍ବା ନନ୍ଦନ, ଶଳେ ଗଣଗଣିଆ ମାଛି। (ହସକୁରା) ଫତୁରାନନ୍ଦଙ୍କ ଗଳ୍ପ ସାହିତ୍ୟର ପଦଗୁଡ଼ିକୁ ହାସ୍ୟ ରସାତ୍ମକ ଓ ଭାବଗର୍ଭକ ଶବ୍ଦପୁଞ୍ଜକୁ ନେଇ ସୃଷ୍ଟି। ପଦଗୁଡ଼ିକ ଶବ୍ଦମାନଙ୍କ ପରି ଦେଶୀ ବିଦେଶୀ ରୂପରେ ପରିବେଶିତ ହୋଇଥିବାର ପରିଲକ୍ଷିତ ହୁଅନ୍ତି। ଅନେକ ସ୍ଥାନରେ ଗଳ୍ପର ପଦଗୁଡ଼ିକ ମାର୍ମିକ ତଥା ଭାବମୟ ହୋଇଥିବା ବେଳେ ସମୟେ ସମୟେ ପଦଗୁଡ଼ିକ ଖୁବ୍ ହାଲକା–ଫୁଲକା ମନେ ହୋଇଥାନ୍ତି। ତାଙ୍କର ବିଭିନ୍ନ ସଂକଳନରେ ପଦର ପ୍ରୟୋଗଗୁଡ଼ିକ ବିଷୟାନୁଧର୍ମୀ ହୋଇଛନ୍ତି। ରାଜନୀତିକୁ ଉପଜୀବ୍ୟ କରି ଯେଉଁ ଗଳ୍ପଗୁଡ଼ିକ ରଚିତ, ସେସବୁରେ ପଦଗୁଡ଼ିକ ରାଜନୀତିଧର୍ମୀ ଏବଂ ସାହିତ୍ୟଧର୍ମୀ ଗଳ୍ପଗୁଡ଼ିକରେ ଯେଉଁ ପଦଗୁଡ଼ିକର ସଂଯୋଜନା ହୋଇଛି, ସେସବୁ ସାହିତ୍ୟ ଅନୁଯାୟୀ ହୋଇଥିବାର ଲକ୍ଷ୍ୟ କରାଯାଏ ।

**ଭାଷା :**

କଥାଶିଳ୍ପୀ ଫତୁରାନନ୍ଦ ତାଙ୍କର ଅନନ୍ୟ ଭାଷା ପ୍ରତିଭା ପାଇଁ ଓଡ଼ିଆ ସାହିତ୍ୟ ଜଗତରେ ବହୁ ପରିଚିତି ହାସଲ କରିଛନ୍ତି । ଭାଷାର ଚମତ୍କାରିତା ତାଙ୍କର ଅନ୍ୟାନ୍ୟ ସାହିତ୍ୟିକ ବିଭାବ ପରି କ୍ଷୁଦ୍ରଗଳ୍ପର ପରିସରକୁ ଅଧିକ ତ୍ୱରାନ୍ୱିତ କରିପାରିଛି। ତାଙ୍କର କ୍ଷୁଦ୍ରଗଳ୍ପର ଅଙ୍ଗ ଯେଉଁ ନିତ୍ୟ ନୂତନ ଭାଷାର ରୂପ ଲାବଣ୍ୟରେ ବିମଣ୍ଡିତ ସେସବୁର ପଟାନ୍ତର ନାହିଁ। ସ୍ଥାନ ବ୍ୟକ୍ତି–ଘଟଣା ପ୍ରଭୃତିର ପରିଚର୍ଯ୍ୟା କଲାବେଳେ ପାଠକ ଫତୁରାନନ୍ଦୀୟ ଭାଷାର ସ୍ୱତନ୍ତ୍ରତା ଉପଲବ୍ଧି କରିହୁଏ। ଗଳ୍ପର କେତେକ ଭାଷିକ ଉଦାହରଣରୁ ଏହା ସ୍ପଷ୍ଟ ହୁଏ। ଯଥା :

- 'ସ୍ତ୍ରୀ ପୀଡ଼କ କଥାଟା ଉପରେ ସମସ୍ତେ କୁଛେଇଲେ।' (୧)
- 'ଏତେ ତରବର କିଆଁ, ଚାହା ଖାଇବ ନାହିଁକି' ? (୨)
- 'ଆହେ, କାଣି ଦଣ୍ଡିଟା ପୁଣି କେମନ୍ତ ଜିନିଷ। (୩)
- 'କାଲକା ଲଣ୍ଡି ସିରମେ ଜଟା'। (୪)
- 'କି ଭାଣ୍ଡିଆ କଥା ! ସେ ସପନପୁରିଆ ସନିଆଭାଇ ଘଙ୍ଘଙ୍ଘଙ୍ଘ ବାଳିଆ, ଶେଉଳ, ତୋଡ଼ି କଳାବାଇଁଶି ସେରଣା ମାଛ ତିନି ଚାରି ମହଣ କୁଢ଼ା ହୋଇଛି। ଘଙ୍ଘଙ୍ଘଙ୍ଘ ସମସ୍ତେ ଖେଁ ଖେଁ ହୋଇ ହସି ଉଠିଲେ। ହସ ଓ ଲାଜରେ ଲୁଟୁପୁଟୁ,

ହୋଇ ସନିଆ ଆଗେଇଲା। (୫)

- 'ଶଳା ! ବଟାଳିକୁ ଚୁଲିରେ ଭର୍ତ୍ତି କରିଦେଇ ଲେଙ୍ଗୁଟିପିନ୍ଧି ଚାଲିଯିବି।'(୬)
- ଅଃ ! ଖାସା କଥାଟିଏ କହିଲୁ। (୭)
- 'ଓହୋ-ହୋ-ହୋ-ହୋ-ଇ-ଲି-ଲି-ଲି-ଇଲୋ। ବୋପାଲୋ ମରିଗଲିଲେ। ଢଢଢ ଆହା, ଇହି, ଉହୁ, ଏହେ, ଓହୋ , ଆଦି ସମସ୍ତ ସ୍ୱରବର୍ଣ୍ଣ, ଯୁକ୍ତଧ୍ୱନି ତା' ପାଟିରୁ ଅନବରତ ବାହାରିବାକୁ ଲାଗିଲା। (୮)
- 'ବଡ଼ ପୁଟୁଳି ବାଲାଏ ନିଜ ନିଜ ପୁଟୁଳା ମୁଣୋଇ ପାଇକଛା ଭିଡ଼ିଦେଇ ପାଣିକୁ ଓହ୍ଲେଇପଡ଼ି ଚାଲିଗଲେ। (୯)

ଓଡ଼ିଆ ଭାଷାର ଯାଦୁକର ଗାଳ୍ପିକ ଫତୁରାନନ୍ଦ ତାଙ୍କ ଗଳ୍ପରେ ନିଖୁଣ ବ୍ୟଙ୍ଗାତ୍ମକ ଭାଷାର ପ୍ରୟୋଗ ପାଇଁ ଜଣେ ଶ୍ରେଷ୍ଠ ଭାଷାଶିଳ୍ପୀ ଭାବରେ ସମଗ୍ର ଓଡ଼ିଆ ଗଳ୍ପ ଜଗତରେ ସୁପରିଚିତ।

**ନାମକରଣ :**

ଫତୁରାନନ୍ଦଙ୍କ ଗଳ୍ପର ଚରିତ୍ର, ସ୍ଥାନ କେତେକ ଘଟଣା, ପୁସ୍ତକ ଓ ଅନୁଷ୍ଠାନ ପ୍ରଭୃତିର ନାମକରଣ ଏତେ ବ୍ୟଙ୍ଗାତ୍ମକ ଓ ରସମୟ ଯେ ତାହା ଅନ୍ୟତ୍ର ବିରଳ। ଯଥା : ବନାମା, ନିକିଟା ସାହୁ, ଷଣ୍ଢପୁଡ଼େଇ ମହାପାତ୍ର, ଆଇଁଷିଆ, ଦନ୍ତାବଳ ଦାସ, ନେଉଳ ସୁବୁଦ୍ଧି, ଝଗଡ଼ି ସାହୁ, ସୁଦନ୍ତ ରାଓ, ଆଲବର୍ଟ ଓରଫ୍ ଅଲବତ, ଗଦେଇ, ଶଙ୍କରା, ଚେମଡ଼ ସିଂ, ହେଙ୍ଗଡ଼ ଦାସ, ଗେଣ୍ଡୁଆ, ଶକୁନି, ଗନ୍ଧିଆ ବାରିକ, ମାରୁଡ଼ି ଦାସ, ଭଞ୍ଜୁଆ, ରମାକାନ୍ତିଆ, ରବି ସିଂହିଆ, ମାୟାଧରିଆ, ରାଧାନାଥିଆ, ଗୁରିଆ, ଜୁରିଆ, ସୁରିଆ, ପର୍ବତ ଦାସ, ଶିଖର ଦାସ, ବିଶ୍ ବିହାରୀ, ଆପୁଲି ସାହୁ, ସେଉଳ ଦାସ, କରୁଣି, ଅଗା ମହାନ୍ତି, ବଗା ମହାପାତ୍ର, ଖଗା ମିଶ୍ର, ଗଦେଇ ଦାସ, ସଦେଇ ପଣ୍ଡା, ହଗରୁ ମଲିକେ, ଦିବା ମୁଦୁଲି ଇତ୍ୟାଦି ଚରିତ୍ରଗୁଡ଼ିକର ନାମକରଣ କରିଥିବାବେଳେ, ସ୍ୱର୍ଗପୁରୀ, ଗଣେଶ ଷ୍ଟୋର୍, ସରସ୍ୱତୀ ଷ୍ଟଲ୍, ଚତୁର୍ମୁଖ ସଦନ, ବୃହସ୍ପତି ଭବନ, ଶୁକ୍ରାଚାର୍ଯ୍ୟ ନିଳୟ, ମହାଦେବ ଭଣ୍ଡାର, ବ୍ୟାସ ମନ୍ଦିର, ନିରାକାର କଲେଜ, ଇନ୍ଦୁର ବାହନ କଲେଜ, ଇଂଲଣ୍ଡ ଇଜିମ୍, ଗେନ୍ଦରୁଇଜିମ୍, ଉଡ଼ନୁଇଜିମ୍, ଫେଜିସ୍ତାନ୍ ସିଆଲିଜିମ୍, ଫିମ୍ପୁଡ଼ିଜିମ୍, ଓଡ଼ିଶୀ ହାବେଲିଯାନ, ବିରେନ୍ ରକେଟ୍ ଇତ୍ୟାଦି ସ୍ଥାନ, ସାହିତ୍ୟର ନୂତନ ବାଦ ଏବଂ ବିଭିନ୍ନ ଯାନଗୁଡ଼ିକର ବ୍ୟଙ୍ଗାତ୍ମକ ନାମକରଣ ଦେଖିବାକୁ ମିଳେ।

ଫତୁରାନନ୍ଦ କେତେଜଣ ଅଧ୍ୟାପକ, ସମ୍ପାଦକ ତଥା ପ୍ରକାଶକଙ୍କର ନାମକୁ ବ୍ୟଙ୍ଗ କରି ତାଙ୍କ ଗଳ୍ପଗୁଡ଼ିକରେ ଚରିତ୍ରର ରୂପ ଦେଇଛନ୍ତି। ଯଥା : ବଇଷମ ସାମଲ, ମାହାନ୍ତାଏ, ଜୋଜନାକବି, ନଟବର, ଗୋପୀନାଥ, ରମେଶ, ଅନନ୍ତ, ରବିନାରାୟଣ ମହାପାତ୍ର ଓ ରବି ସିଂହ ପ୍ରଭୃତିଙ୍କୁ ଗାଳ୍ପିକ ଗଳ୍ପର ପରିସରକୁ ଆଣି ବ୍ୟଙ୍ଗାତ୍ମକ ଭାବଭଙ୍ଗୀରେ ସାହିତ୍ୟ ସଭା, କବି ସମ୍ମିଳନୀ, ସାହିତ୍ୟ ଚର୍ଚ୍ଚା, ପୁସ୍ତକ ପ୍ରକାଶନ, ଇତ୍ୟାଦି ଘଟଣା ସ୍ଥଳରେ ବର୍ଣ୍ଣନା କରିଛନ୍ତି।

ଫତୁରାନନ୍ଦଙ୍କର ଗଳ୍ପ ସଂକଳନର ନାମ ତଥା ଏହି ସଂକଳନ ସନ୍ନିବିଷ୍ଟ ଗଳ୍ପଗୁଡ଼ିକର ନାମ, ଚରିତ୍ର, କଥାବସ୍ତୁ, ଘଟଣା, ସ୍ଥାନ ପ୍ରଭୃତିକୁ ଆଧାରକରି ବ୍ୟଙ୍ଗାତ୍ମକ ନାମଗୁଡ଼ିକ ରଖାଯାଇଛି, ଯଥା- 'ନିଲଠା କବି', 'କଲମ ଛଡ଼େଇ', 'ଲଣ୍ଡଟକ ସାହିନ୍ଦର', 'ପତ୍ରିକା ଟନିକ୍', 'ମଉସୁମୀ ବେଉଷା', 'ଗଦ୍ଧଲ ଖାସୁ', 'ଚୁଙ୍କୁ ଚୁଙ୍ଗିଆ ବାଙ୍କା', 'ଗୁଗୁରିପେଞ୍ଚ', 'ଶିଖଣ୍ଡୀ କଲେଜ', 'କିରିକେଟ ପୋକ', 'କ୍ରିକେଟ୍ ପୁରାଣ', 'ଗାଳିମାଳିକା', 'କମିଶନବାଦ', 'ଛିଙ୍କ ମହାତ୍ମ୍ୟ', 'କଟକି କାଫେ', 'ଭୂତ ଭେଲିକି', 'ବାସଳେଇର କୋପ', 'କପିବାଜଙ୍କ କୁଆରଭଙ୍ଗା', 'ଚାରିଶ ବିଶ୍ କଲେଜ', 'ଦାନ୍ତ ସାହିତ୍ୟର ପୋଲୁହ', 'ସାହିତ୍ୟ ମାରୁର ସଫେଇ', 'ଓଡ଼ିଓପ୍ୟାଥି', 'ପଙ୍ଗପାଳ', 'ସୁଟ୍‌କେଶ', 'ଟେଲିଫୋନ୍', 'ହଁ ଫଳେଷୁ ସଦାଚନ', 'ଏରଣ୍ଡ ତ୍ରୟୋଦଶୀ', 'ଚିହାଣ', 'ଚୌରଢ଼ାକୁଙ୍କ ଧର୍ମଘଟ' ପ୍ରଭୃତି କ୍ଷୁଦ୍ରଗଳ୍ପଗୁଡ଼ିକର ନାମକରଣ ଜରିଆରେ ଗାଳ୍ପିକ ଫତୁରାନନ୍ଦ ଚମତ୍କାର ଭାଷା ପ୍ରୟୋଗର ଯେଉଁ ଅଭିନବତ୍ୱ ଫୁଟାଇଛନ୍ତି, ତାହା ଆଧୁନିକ ଓଡ଼ିଆ ଜଗତର ତାଙ୍କୁ ଏକ ଅନନ୍ୟ ସ୍ରଷ୍ଟାର ଆସନ ପ୍ରଦାନ କରିଛି।

**ପରିବେଶ :**

ସ୍ରଷ୍ଟା ତା' ସୃଷ୍ଟିର ପ୍ରଥମ ଚିନ୍ତନରେ ପରିବେଶକୁ ହିଁ ସମ୍ମୁଖକୁ ଆଣିଥାଏ। ତେଣୁ ଗୋଟିଏ ସୃଷ୍ଟିର ମୁଖ୍ୟ ଆଧାର

ହେଉଛି ପରିବେଶ । ଫତୁରାନନ୍ଦଙ୍କ କଥା ସାହିତ୍ୟର ପରିବେଶ ହେଉଛି କଟକ ସହରର ଗଳି-କନ୍ଦି, ବସ୍ତି ବଜାର, କଟକ ଟାଉନ୍ ହଲ୍- ସାହିତ୍ୟ ସଭା, କଲେଜ ସ୍କୁଲ, ମେଡ଼ିକାଲ୍, ବହି ଦୋକାନ ପ୍ରଭୃତି ଅନେକ ଘଟଣାବହୁଳ ସ୍ଥାନ । ଏହି କଟକ ପରିବେଶକୁ ନେଇ ଫତୁରାନନ୍ଦଙ୍କ କଥାସାହିତ୍ୟ ରସାଳ ଓ ବ୍ୟଙ୍ଗାତ୍ମକ ଭାବରେ ପରିବେଶିତ । ତାଙ୍କର କଥା ସାହିତ୍ୟର ପରିବେଶ ଯେତିକି ହାସ୍ୟପୂର୍ଣ୍ଣ ସେତିକି ଜୀବନ୍ତ ଓ ବାସ୍ତବ । ତେଣୁ ପାଠକ ତାଙ୍କ ଗଳ୍ପ ଅଧ୍ୟୟନ କଲାବେଳେ ନିତି ଭେଟୁଥିବା, ଦେଖିଥିବା ଏବଂ ଅନୁଭବ କରୁଥିବା କଟକିଆ ଠାଣି ଚାହାଣୀ ସବୁକୁ ନିଜ ଭିତରେ ଉପଲବ୍ଧି କରେ ।

ପୂର୍ବରୁ, ଗଳ୍ପ ପରିଚର୍ଯ୍ୟା ପ୍ରସଙ୍ଗରେ ଫତୁରାନନ୍ଦଙ୍କ କ୍ଷୁଦ୍ରଗଳ୍ପର ପରିବେଶ ସଂପର୍କରେ ବିସ୍ତୃତ ଆଲୋଚନା କରାଯାଇଛି । ଗାଳ୍ପିକଙ୍କ କ୍ଷୁଦ୍ରଗଳ୍ପର ପରିବେଶକୁ ପାଞ୍ଚଗୋଟି ବିଭାଗରେ ଆଲୋଚନା କରାଯାଇପାରେ । (କ) ସାହିତ୍ୟିକ ପରିବେଶ, (ଖ) ରାଜନୀତିକ ପରିବେଶ, (ଗ) ସାମାଜିକ ପରିବେଶ, (ଘ) ସାଂସ୍କୃତିକ ପରିବେଶ, (ଡ) ଅର୍ଥନୈତିକ ପରିବେଶ । ସାହିତ୍ୟିକ ପରିବେଶ ମଧ୍ୟରେ, ଫତୁରାନନ୍ଦ ସାହିତ୍ୟସଭା, ସଂପାଦକ, ସଭାପତି, କବିତା ପାଠୋତ୍ସବ, ଅଧ୍ୟାପକ, ପ୍ରଫେସର, ପ୍ରକାଶକ, ଲେଖକ ଏବଂ କବି ପ୍ରଭୃତି କେତେକ ବ୍ୟକ୍ତି ଚରିତ୍ର ତଥା ଘଟଣାକୁ ନେଇ ଚମତ୍କାର ବ୍ୟଙ୍ଗାତ୍ମକ ବର୍ଣ୍ଣନା କରିଛନ୍ତି । ଯଥା : ବହି ଦୋକାନ ପ୍ରସଙ୍ଗରେ ଗାଳ୍ପିକ ତାଙ୍କର 'ନବଜିଆ' ସଂକଳନରେ ସନ୍ନିବିଷ୍ଟ 'ଶେଷ ବେଉସା' ଗଳ୍ପରେ ଉଲ୍ଲେଖ କରିଛନ୍ତି – କିଛି ଦିନ ପରେ ବହି ଦୋକାନଟିଏ ଆରମ୍ଭ ହେଲା । ଏଥିରେ ସେଲଟିକସ ନାହିଁ, ତେଣୁ ନିରାପଦ, ମାସ କେଇଟାରେ ଦୁହିଙ୍କ ମୁହଁ ମୋଡ଼ି ହୋଇଗଲା । ସରକାରୀ ଓ ବୋର୍ଡ଼ର ବହିର କାଟ୍‌ତି ଖୁବ୍ ବେଶୀ । ହେଲେ ତାଙ୍କ ଗୋଦାମରୁ ଯୋଗାଣ ଏତେ କମ୍ ହେଲା ଯେ ସେଥିରେ ସେ ବାଟରେ ଏକ ପ୍ରକାର ଘାଟତି ଦେଖାଗଲା । ସେମାନେ ମଧ୍ୟ ଗରାଖମାନଙ୍କୁ ସନ୍ତୁଷ୍ଟ କରିବା ଆଳ ଦେଖାଇ ଖୁଚୁରା ବିକ୍ରୟ କେନ୍ଦ୍ର ଆରମ୍ଭ କରିଦେଲେ । ମୋଟା ବହି ବ୍ୟବସାୟୀଙ୍କ ପାଖକୁ ଆଉ ଯିବ କିଏ ? ନୂଆ ବହି ଦୋକାନ ଦେଖି ଆଧୁନିକ ଧନ୍ଦା କବିମାନେ ନିଜ ନିଜ କବିତା ପାଣ୍ଡୁଲିପିଗୁଡ଼ିକ ଧରି ଧାଇଁଲେ ।'(୧୦)

ଫତୁରାନନ୍ଦଙ୍କ କଥା ସାହିତ୍ୟରେ ଯେଉଁ ରାଜନୀତିକ ପରିବେଶ ଦୃଷ୍ଟିଗୋଚର ହୁଏ ତାହା, କେବଳ କଟକର ନୁହେଁ, ଓଡ଼ିଶା ଏବଂ ସମଗ୍ର ଭାରତବର୍ଷର । ତଥାପି ତାଙ୍କ ସମୟର ରାଜନୀତିକ କ୍ଷେତ୍ରରେ ଆସୀନ ବିଶିଷ୍ଟ ନେତୃବର୍ଗଙ୍କର ଚରିତ୍ର, କାର୍ଯ୍ୟକଳାପ, ଦୋଷ ଗୁଣର ବର୍ଣ୍ଣନା ନିହାତି ବ୍ୟଙ୍ଗାତ୍ମକ ଢ଼ଙ୍ଗରେ ଦେଖିବାକୁ ମିଳେ । ତାଙ୍କର ପ୍ରମୁଖ ରାଜନୈତିକ ଗଳ୍ପଗ୍ରନ୍ଥ ଭୋଟ୍ ଜରିଆରେ ଭୋଟ ପ୍ରଚାର, ଭୋଟ୍ ପ୍ରଦାନ କେନ୍ଦ୍ର, ନେତାଙ୍କର ଶସ୍ତା ଭାଷଣ ଏବଂ କ୍ଷମତାସୀନ ନେତାଙ୍କର ମାରଣନୀତି ପ୍ରଭୃତି ତୀକ୍ଷଣ ଭାବରେ ବର୍ଣ୍ଣିତ । ଗାଳ୍ପିକଙ୍କର 'ଭୋଟ୍'ଗଳ୍ପ ସଂକଳନରେ ହୋଟଲ୍ ବାବାଙ୍କ ଭୋଟ୍ କିମିଆଁ ଗଳ୍ପରେ କୁହାଯାଇଛି : 'ଜୟ ହରିହରି ବୋଲ' କହି ଫାଉଡ଼ା ଦାସେ ସାଇକେଲ ଉପରେ ଉଠିଲେ । ଯାହାଙ୍କୁ ଆଗରେ ପାଇଲେ ତାହାକୁ ଅଟକାଇ କହିଲେ, ଆଜ୍ଞା, ଆପଣଙ୍କ ସେବାପାଇଁ କମର କସି ବାହାରିଛି । ଅତୀତରେ ତ କାହାକୁ କେତେ ଭୋଟ୍ ଦେଇଛନ୍ତି । ସେମାନେ କ'ଣ ଉପକାର କରିଥିଲେ । ଏବେ ଭୋଟ୍ ଦେଇ ଦେଖନ୍ତୁ ମୁଁ ଆପଣଙ୍କର କି ସେବା କରୁଛି । ଆପଣ ଯେତେବେଳେ ଚାହିଁବେ, ମୁଁ ଆପଣଙ୍କ ଦୁଆରେ ହାଜର୍ ହୋଇଯିବି । (୧୧)

ସମାଜ ସଚେତନ ଗାଳ୍ପିକ ଫତୁରାନନ୍ଦଙ୍କ ଗଳ୍ପର ପରିବେଶରେ କଟକ ସହରର ଗଳି କନ୍ଦିରେ ବାସ କରୁଥିବା ସାଧାରଣ ଓଡ଼ିଆ, ବ୍ୟବସାୟୀ, ଧନୀ ମାରୱାଡ଼ି ପ୍ରଭୃତିଙ୍କର ଜୀବନଧାରଣର ମାନ ବର୍ଣ୍ଣିତ ହେବା ଛଳରେ ସମଗ୍ର ଓଡ଼ିଶା ରାଜ୍ୟର ମଣିଷ ଜୀବନର ଯଥାର୍ଥ ସାମାଜିକ ଚିତ୍ର ପ୍ରଦତ୍ତ ହୋଇଛି । କଟକର ଦହିବରା ବ୍ୟବସାୟୀ, ପରିବା ବିକାଳି, ଲୁଗା ଦୋକାନୀ ପ୍ରଭୃତି ବ୍ୟବସାୟୀ ଗୋଷ୍ଠୀଙ୍କର ବାସ୍ତବ ଚିତ୍ର ବର୍ଣ୍ଣନା ପରିବେଶରେ ଗାଳ୍ପିକ ଯେଉଁ ସାମାଜିକ ବ୍ୟଙ୍ଗ ସୃଷ୍ଟି କରିଛନ୍ତି, ତନ୍ମଧ୍ୟରେ ତାଙ୍କର ସାମାଜିକ ଦୃଷ୍ଟିଭଙ୍ଗୀର ତୀକ୍ଷ୍ଣତାକୁ ପାଠକଙ୍କ ଉପଲବ୍ଧି କରେ ।

ସଂସ୍କୃତି ପ୍ରାଣ ଫତୁରାନନ୍ଦ ତାଙ୍କ କଥା ସାହିତ୍ୟ ମଧ୍ୟରେ ତାତ୍କାଳିକ ଓଡ଼ିଶାର ସଂସ୍କୃତିକୁ ଅତି ନିଖୁଣ ଭାବରେ ରୂପାୟିତ କରିଛନ୍ତି । ରବୀନ୍ଦ୍ର ମଣ୍ଡପ, ଟାଉନ୍ ହଲ୍, ସୂଚନା ଭବନ, ଅଡ଼ିଟୋରିୟମ୍, ବିଶ୍ୱବିଦ୍ୟାଳୟର ବାର୍ଷିକୋତ୍ସବ, ସାହିତ୍ୟ ସଭାର ପୁରସ୍କାର ବିତରଣୀ ଉତ୍ସବ, କବିତା ପାଠୋତ୍ସବ, କବି

ଓ ଲେଖକଙ୍କ ଜନ୍ମଦିନ ପାଳନ ତଥା ଓଡ଼ିଶାର ବିଭିନ୍ନ ପର୍ବପର୍ବାଣି ପିଠାପଣା, ସାଜ–ସଜ୍ଜା ପ୍ରଭୃତିର ବର୍ଣ୍ଣନା ପ୍ରସଙ୍ଗରେ ଗାଳ୍ପିକ ଓଡ଼ିଶାର ସାଂସ୍କୃତିକ ପରିବେଶକୁ ଅଭିନବ ରୂପ ପ୍ରଦାନ କରିଛନ୍ତି।

ଫତୁରାନନ୍ଦ ତାଙ୍କର ଗଳ୍ପ ସାହିତ୍ୟରେ କବିଙ୍କ ପରିବେଶ ଏବଂ କଟକର ଆର୍ଥନୀତିକ ଅବସ୍ଥା ଜରିଆରେ ସମଗ୍ର ଓଡ଼ିଆ ଜାତିର ଆର୍ଥିକ ସ୍ଥିତିକୁ ଦର୍ଶାଇବାକୁ ଭୁଲିନାହାନ୍ତି। ଏହା, ତାଙ୍କର ବିଜ୍ଞ ଦୂରଦର୍ଶିତାର ପ୍ରମାଣ ପ୍ରଦାନ କରେ।

**ଶୈଳୀ :**

ପ୍ରତ୍ୟେକ ସ୍ରଷ୍ଟାର ସ୍ୱକୀୟ ଶୈଳୀ ତା'ର ସ୍ୱତନ୍ତ୍ରତାକୁ ସ୍ପଷ୍ଟ କରିଥାଏ। ଗାଳ୍ପିକ ଫତୁରାନନ୍ଦ ସେହିପରି ଏକ ସ୍ୱତନ୍ତ୍ର ଶୈଳୀର ଅଧିକାରୀ। ତାଙ୍କର କ୍ଷୁଦ୍ରଗଳ୍ପଗୁଡ଼ିକର ମୁଖ୍ୟ ଶୈଳୀ ହେଉଛି ହାସ୍ୟ ଓ ବ୍ୟଙ୍ଗ୍ୟ ଫତୁରାନନ୍ଦଙ୍କର ଉପସ୍ଥାପନ ଶୈଳୀ ଆଧୁନିକ କ୍ଷୁଦ୍ରଗଳ୍ପର ସଂଜ୍ଞାକୁ ବହନ କଲେ ମଧ୍ୟ ଅନ୍ୟାନ୍ୟ ଗାଳ୍ପିକମାନଙ୍କଠାରୁ ସେ ସ୍ୱତନ୍ତ୍ର। ଗଳ୍ପର ଆରମ୍ଭରେ ଗାଳ୍ପିକ କେତେବେଳେ ଚରିତ୍ରକୁ ତ କେତେବେଳେ ପ୍ରବାଦ ପ୍ରବଚନକୁ ଏବଂ କେତେବେଳେ ବିଭିନ୍ନ ପରିବେଶ ପ୍ରଭୃତିକୁ ନେଇ ନିଜ ଅନୁଚିନ୍ତା ଆଭିମୁଖ୍ୟକୁ ପରିବେଷଣ କରିଥାନ୍ତି। ଚରିତ୍ରକୁ ଭିତ୍ତି କରି ତାଙ୍କର ପରିବେଷଣ ଶୈଳୀ : ଶଂଭୁଆ ନିଜ ଛାଇକୁ ଚାହିଁଲା। ସେଇଟା ଠିକ୍ ଗୋଡ଼ ତଳକୁ ଲୁଚିଲୁଚି ଆସୁଛି। (୧୨) 'କାଶୀନାଥ ବିବ୍ରତ, ବ୍ୟତିବ୍ୟସ୍ତ ଓ ଉତ୍ତେଜିତ ହୋଇପଡ଼ି କହିଲେ, ଆଜ୍ଞା, ଆପଣ କାହିଁକି ମୋତେ ହଇରାଣ କରୁଛନ୍ତି।' (୧୩)

ହଗରୁ ମଲିକେ ସବୁ ବେଉଷାରେ ଚିତ୍‌ପଟାଙ୍ଗ ମାରିସାରିବା ପରେ ମନେ ମନେ ସ୍ଥିର କଲେ ଯେ, ସେ ଜଣେ କାମ କବି ବନିବେ। (୧୪)

ପ୍ରବାଦ –ପ୍ରବଚନକୁ ଭିତ୍ତିକରି ତାଙ୍କ କ୍ଷୁଦ୍ରଗଳ୍ପର ପରିବେଷଣ ଯଥା :– ଯାହା ବାପ ଚଢ଼ିଥାଏ ଘୋଡ଼ା, ସେ ବି ଚଢ଼େ ଥୋଡ଼ା ଥୋଡ଼ା ।

କୋଦିଣ୍ଡ ଆର୍ଟ କଲେଜର ଅଧ୍ୟାପକ ବଙ୍ଗୁସେନ୍ ଜଣେ ଅସାଧାରଣ ଚିତ୍ରଶିଳ୍ପୀ।(୧୫)

କେଶରୀ କେଶ କର୍ଷକ, ଶାର୍ଦ୍ଦୁଳ ଦଳ ଦଳନ ଦଳପତି ପାଷାଣ୍ଡ, ଲଣ୍ଡ ଭଣ୍ଡକ କୁଳ ଷଣ୍ଡ ମଣ୍ଡନ, ନଷ୍ଟ ଭ୍ରଷ୍ଟ ଦୁଷ୍ଟ ଗୋଷ୍ଠୀ ତାଡ଼ନ ଯଷ୍ଟୀ, ନିଶଙ୍କ ରଣରଙ୍ଗ ଧରାଙ୍କ ଖୋଳନବାଙ୍କ, ଭାରତୀ ମତି ଅତି ତୃପ୍ତି ଦାୟକ, ପରମ ପରାକ୍ରମ ଗୁଳ୍ମ କୁଳଦ୍ରୁମ, ବୀରାଧି ବୀରବର ବୈରୀ ଗର୍ବ ଗଞ୍ଜନ, ପ୍ରଜାରଞ୍ଜନ, ଦର୍ପଭଞ୍ଜନ, ହସ୍ତିପତି ଭ୍ରମରବର ମାନ୍ଧାତା ଜଂବୁ ଦ୍ୱିପାଧିପତି ବିସ୍ମରଣ ସିଂହ ବାହାଦୁରଙ୍କ ଦରବାର ବେଶ୍ ଉଷୁମ ହୋଇ ଉଠିଥାଏ ।(୧୭)

ଫତୁରାନନ୍ଦଙ୍କ ବର୍ଣ୍ଣନା ଶୈଳୀ ଅତ୍ୟନ୍ତ ଚମତ୍କାରପ୍ରଦ। ଗଳ୍ପର ଗତି–ପ୍ରକୃତି ମଧରେ ସଂଳାପଧର୍ମୀତା ତାଙ୍କର ମୁଖ୍ୟ ଶୈଳୀ। ତେଣୁ, ନାଟକୀୟତା ତାଙ୍କ କ୍ଷୁଦ୍ରଗଳ୍ପରୁ ବେଶ ସ୍ପଷ୍ଟ ଜଣାପଡ଼େ। ଯଥା : ପେଞ୍ଚ ? ସେ ଭାର ମୋ ଉପରେ । ପୁଲିସ୍ ସାହେବର କଛା କାଟିଦେଲାବାଲା ମୁଁ। ମୋ ନାଁ ଦୀନାଟି । (୧୮)

ମାଟ୍ରିକ ପରୀକ୍ଷା ଫଳ ଅନେକ ଦିନର କବଜ ଓ କୁନ୍ଥନ ପରେ ଭସ୍ କରି ଖଲାସ୍ ହୋଇଗଲା। (୧୯) ଏଁ ! ଦୁଇଟି ପାର୍ଟି। ଆମ ପୃଥବୀରେ ପ୍ରାୟ ପଚାଶରୁ କମ୍ ନୁହେଁ । (୨୦)

ଫତୁରାନନ୍ଦଙ୍କ କ୍ଷୁଦ୍ରଗଳ୍ପର ଭାଷା ଶୈଳୀ ଖୁବ୍ ହାସ୍ୟ ରସାତ୍ମକ। ବେଳେବେଳେ ଏହା କବିତାଧର୍ମୀ ମଧ୍ୟ ମନେହୁଏ । ଯଥା : ସୁଶୀତଳ, ପ୍ରଚଣ୍ଡ ବିକ୍ଷୋଭ,

ରାଜପଥେ ନାହିଁ ପଦଚିହ୍ନ, ହଲୁଛି ଏ ଜୋବରାର ଖୁଣ୍ଟି। (୨୧)

ଫତୁରାନନ୍ଦ କେତେଗୁଡ଼ିଏ ସଂସ୍କୃତ ଶ୍ଳୋକକୁ ମଧ୍ୟ ଅର୍ଥକୁ ଅନର୍ଥ କରି ଅକ୍ଷରକୁ ଓଲଟାଇ ବ୍ୟବହାର କରିଛନ୍ତି । ଯଥା: ନା ଫଳେଶୁ ସଦାଚନ। ବେଳେବେଳେ ଗାଳ୍ପିକ ସଂପୂର୍ଣ୍ଣ ନାଟକୀୟ ଶୈଳୀରେ ସଂଳାପ ଆକାରରେ ତାଙ୍କର ଗଳ୍ପକୁ ଗତିଶୀଳ କରାଇଛନ୍ତି।

ଯଥା : 'ଏ ବଙ୍ଗଳା ପତ୍ରିକା କେଉଁ ମାସର' ?
'ଅଗଷ୍ଟ – ୧୯୪୦।'
'ଏ ଓଡ଼ିଆ ପତ୍ରିକାଟି କେଉଁ ମାସର ।'
'ଏପ୍ରିଲ ପହିଲା ୧୯୫୭।'
'ଏ ଗପ ନାଁ କଣ ଓ କିଏ ଲେଖିଛି ?'
'କଞ୍ଚା କେଲା, ଲେଖକ ଶତ୍ରୁସେନ୍ ।'

'ଏଇଟା ?'
'କଞ୍ଚା କଦଳୀ, ଲେଖକ ବ୍ରଜଦାସ୍ ।'

ଫତୁରାନନ୍ଦ ତାଙ୍କର ଗଳ୍ପଗୁଡ଼ିକର ଅନେକ ଗାଉଁଲି ପ୍ରବାଦ ପ୍ରବଚନ, ଲୋକ କଥିତ ଭାଷା, ସଂସ୍କୃତ ଶ୍ଳୋକ ଏବଂ ରୀତିଯୁଗୀୟ କବିଙ୍କର କେତେକ ପାଦକୁ ଉଦ୍ଧାର କରିବା ସହିତ ଗାଁ ଗହଳି ତଥା କଟକୀ ଭାଷାର କେତେକ ଗାଳି ଗୁଲଜକୁ ତାଙ୍କ ଗଳ୍ପର ଭାଷାଶୈଳୀ ଭାବରେ ବର୍ଣ୍ଣନା କରିଛନ୍ତି, ଯାହାକି ଅନ୍ୟତ୍ର ବିରଳ। ଯଥା : ଶଳା, ମାଇପବୋଲା, ଓଟମୁହାଁ, ଅଣ୍ଡିରୀଚଣ୍ଡୀ, ଉଦଣ୍ଡୀ, ଛତରଖିଆ, ଗାତପଶା ପ୍ରଭୃତି ଶବ୍ଦାବଳୀ।

ଫତୁରାନନ୍ଦ ତାଙ୍କ ଗଳ୍ପର କେତେକ ସ୍ଥାନରେ କେତୋଟି ଅକ୍ଷରର ଚମତ୍କାର ପ୍ରୟୋଗ ଦ୍ୱାରା ନୂଆ ନୂଆ ସଂକେତ ପ୍ରଦାନ କରିଛନ୍ତି । ଯଥା:

'ଇ ହି ହି ହି'
'ଏ ହେ ହେ'
'ହୁଁ ହୁଁ ଉ ହୁ ହୁ' (୨୨)

**ଗଳ୍ପର କଥାବସ୍ତୁ :**

କ୍ଷୁଦ୍ରଗଳ୍ପର କଥାବସ୍ତୁ ହେଉଛି ବିହନ। ଉତ୍ତମ ବିହନ ଦ୍ୱାରା ଯେଭଳି ଭଲ ଫସଲ ଅମଳ ହୁଏ, ଅନୁରୂପ ଭାବେ, ଉତ୍କୃଷ୍ଟ କଥାବସ୍ତୁର ଅବତାରଣା ଦ୍ୱାରା ଚମତ୍କାର କ୍ଷୁଦ୍ରଗଳ୍ପଟିଏ ସୃଷ୍ଟି ହୁଏ । ଫତୁରାନନ୍ଦଙ୍କ କଥା ସାହିତ୍ୟ ଯେଉଁ କଥାବସ୍ତୁକୁ ନେଇ ସଂପ୍ରସାରିତ, ତାହା ସାଧାରଣତଃ କଟକର ଆଖିଦୃଶିଆ କେତେକ ଘଟଣା, ସ୍ଥାନ ଓ ଚରିତ୍ରମାନଙ୍କର ବର୍ଣ୍ଣନା କେବଳ। ତାଙ୍କର ୨୧ଟି କ୍ଷୁଦ୍ରଗଳ୍ପ ସଂକଳନ ମଧ୍ୟରେ ଗଳ୍ପର କଥାବସ୍ତୁ ମୁଖ୍ୟତଃ ସାହିତ୍ୟିକ-ସାହିତ୍ୟ, ଅଧ୍ୟାପନା-ଅଧ୍ୟାପକ, ରାଜନୀତି- ନେତୃବୃନ୍ଦ, ପୁସ୍ତକ ପ୍ରକାଶନ ବିକ୍ରେତା, ସଂପାଦକ-ପ୍ରକାଶକ, କବି-ଲେଖକଙ୍କ ଦୁର୍ଦ୍ଦଶା ଓ ଚାପଲୁସି, ପୋଲିସ୍ ପରି ସଚ୍ଚୋଟ କର୍ମଚାରୀମାନଙ୍କର ଦୁର୍ଗୁଣ, କଟକର ସାଧାରଣ ଗଳି-କନ୍ଦି, ବସ୍ତି-ବଜାରରେ ବାସ କରୁଥିବା ରିକ୍ସାବାଲା, ଭିକାରୀ, ବ୍ୟବସାୟୀ ଏବଂ ଧନୀକ ବ୍ୟକ୍ତିମାନଙ୍କର ଚାରିତ୍ରିକ ବିଶ୍ଳେଷଣ ହିଁ ପ୍ରଧାନ ସ୍ଥାନ ଗ୍ରହଣ କରନ୍ତି।

**ପ୍ରବାଦ ପ୍ରବଚନ :**

ଗାଳ୍ପିକ ଫତୁରାନନ୍ଦଙ୍କ କଥା ସାହିତ୍ୟ ଭାଷା ଦୃଷ୍ଟିରୁ ଖୁବ୍ ରସାଳ ଓ ହାସ୍ୟୋଦ୍ଦୀପକ। ବ୍ୟାକରଣ ଦୃଷ୍ଟିରେ ଯେଉଁସବୁକୁ ପ୍ରବାଦ ଏବଂ ପ୍ରବଚନ ଆଖ୍ୟା ଦିଆଯାଇଛି, ସେଥିରୁ କେତେଗୁଡ଼ାଏ ଫତୁରାନନ୍ଦଙ୍କ ଗଳ୍ପଗୁଡ଼ିକର ମୁଖ୍ୟ ଉପଜୀବ୍ୟ ବସ୍ତୁ ହୋଇପଡ଼ିଛି। ଗାଉଁଲି ଶବ୍ଦ ସହିତ କଟକ ଠାଣି ଚାହାଣୀକୁ ବ୍ୟଙ୍ଗ କରିବାକୁ ଯାଇ ଫତୁରାନନ୍ଦ ବହୁ ପ୍ରବାଦ ପ୍ରବଚନକୁ ପ୍ରୟୋଗ କରିଛନ୍ତି। ଚାରିତ୍ରିକ ବିଶ୍ଳେଷଣ, ଦୁର୍ଗୁଣ ଓ ସୁଗୁଣର ବିଚାରାଲୋଚନା, ଠକ-ପ୍ରବଞ୍ଚକମାନଙ୍କର ସ୍ୱରୂପ ଉନ୍ମୋଚନ, କେତେକ ଘଟଣାର ବାସ୍ତବ ରୂପକୁ ପ୍ରବଚନାତ୍ମକ କରିବାକୁ ଯାଇ ଫତୁରାନନ୍ଦ ପ୍ରାସଙ୍ଗିକ ଭାବରେ ଅନେକ ପ୍ରବାଦ-ପ୍ରବଚନର ସାହାଯ୍ୟ ନେଇଛନ୍ତି। ଯଥା :-

'ନଈ ନ ଦେଖୁଣୁ, ଲଙ୍ଗଳା'(୨୩)
'ସତର ସେଣାରେ ପାଣି ପିଇବା'(୨୪)
'ପୂରା ପାଞ୍ଚଆଙ୍ଗୁଠି ମୁହଁରେ ପୁରାଇବା' (୨୫)
'ନାଗ ବଚ୍ଚା'(୨୬)
'ଦି ଗୋଡ଼ିଆ ବିରାଡ଼ି' (୨୭)
'ଲଗା ନାହିଁ କି ପଘା ନାହିଁ' (୨୮)
'ରାଣ୍ଡ ଧମକାଣ' (୨୯)
'ଏ ପଛମେ କଠଲ ଓଠ ମେଁ ତେଲ' (୩୦)
'ମଇଁଷି ସିଂଘ ଫଟା, ଜୁଝିଲା ବେଳକୁ ଗୋଟା' (୩୧)
'ଦି ଗୋଡ଼ିଆ ମାଙ୍କଡ଼'(୩୨)
'ଯଦି ଅଷ୍ଟିଲଗ୍ନେ ଶନି, ଶୁକ୍ରଂ ସହ କରୋତି ଘଣି
'ଭାସ୍କରାଚାର୍ଯ୍ୟ ବଦନ୍ତି ବାଣୀ, ଷଡ଼ମାସେ ଆୟୁ ରହତି ପ୍ରାଣୀ' (୩୩)
'ଦ୍ୱୟୋର୍ବିବାଦେ ତୃତୀୟସ ଲାଭ'(୩୪)

**ବ୍ୟାକରଣଗତ ପ୍ରୟୋଗ**

ଫତୁରାନନ୍ଦଙ୍କ କଥା ସାହିତ୍ୟ ଯେଉଁ ସାହିତ୍ୟିକ ସଂପଦକୁ ନେଇ ପରିପୂର୍ଣ୍ଣ ସେଗୁଡ଼ିକ ମଧ୍ୟରେ ବ୍ୟାକରଣଗତ ଉପାଦାନ ତାଙ୍କର ସୃଷ୍ଟିକୁ ଅଧିକ ସାହିତ୍ୟାନୁମୋଦିତ କରିପାରିଛି। ପଦ, ଅକ୍ଷର, ଲିଙ୍ଗ, ଉପସର୍ଗ, ବିଭକ୍ତି, କାରକ, ବଚନ, ବିଶେଷ, ବିଶେଷଣ, କ୍ରିୟାପଦ, ଶବ୍ଦରୂପ, ଧାତୁରୂପ, ମିତ୍ରାକ୍ଷର ଏବଂ

ଅମିତ୍ରାକ୍ଷରର କେତେକ ପଦର ପ୍ରୟୋଗ କମା, ହାଇଫେନ, ସେମିକଲୋନ, ପ୍ରଶ୍ନବାଚୀ, ବିସ୍ମୟ ସୂଚକ ଚିହ୍ନ ଆଦିର ପ୍ରୟୋଗ, ବରଂ, କିନ୍ତୁ, ଅଥଚ, ଓ, କିମ୍ବା ପ୍ରଭୃତି ବାକ୍ୟ ସଂଯୋଗକାରୀ ଶବ୍ଦମାନଙ୍କର ପ୍ରୟୋଗ, ଫତୁରାନନ୍ଦଙ୍କର କ୍ଷୁଦ୍ରଗଳ୍ପ ଭଣ୍ଡାରକୁ ସାହିତ୍ୟର ମହିମାମୟ ଐଶ୍ୱର୍ଯ୍ୟ ପ୍ରଦାନ କରିଛି ।

ହାଇପେନ : ଆଉ ଜଣେ ପଣ୍ଡିତ ଗାମୁଛାରେ ମୁହଁଟାକୁ ପୋଛି ଦେଇ ହାଙ୍କିଲେ ଅହମିଦ ଶ୍ଳୋକଂ କଦାପି ସ୍ୱୀକାର କରିବି ନାହିଁ । (୩୫)

କମା : ଚକରାର କ୍ରୋଧାଗ୍ନି ହଠାତ୍ ଏପରି ଭସ କରି ଜଳି ଉଠିବା ଦେଖି, ସାହି ଟୋକାଏ ଆସି ତା' ଚାରିପାଖରେ ଘେରି ଜମା ହୋଇଗଲେ । (୩୭)

ପ୍ରଶ୍ନବାଚୀ : ଚାହା ଜଳଖିଆରେ ଆପାୟିତ ହୋଇସାରି ଜଗନ୍ନାଥ କହିଲେ, ଆଳସ ରଞ୍ଜନ ବାବୁ ଆସିଥିଲେ କି ? (୩୭)

ଲିଙ୍ଗ : ଗୋଟିଏ ଦରବୁଢ଼ାର ଦୁଇଟି ମାଇପ ଥିଲେ । (୩୮)

ବିସ୍ମୟ ସୂଚକ ଚିହ୍ନ : ଆଉ କି ସମ୍ଭଳା ପଡ଼େ ! (୩୯) ଉଃ ! ଉଁ ! ତୋ ମୁଣ୍ଡରେ ଏତେ ମସଲା ଥିଲାତ ସେତିକି ବେଳେ ଓକାଳି ପକାଇଲୁନି । (୪୦)

ସମ୍ବୋଧନେ ପ୍ରଥମା ବିଭକ୍ତି : ପ୍ରଣାମ ଗ୍ରହଣ କରନ୍ତୁ ଗୁରୁଦେବ ।(୪୧)

ସପ୍ତମୀ ବିଭକ୍ତି : ତେନ୍ତୁଳି ଛାଟରେ ମାଡ଼ ଖାଇଲା ପରି ଛାଟିପିଟି ହୋଇ ପଳାଇ ଆସିଲି ।(୪୨)

ମିତ୍ରାକ୍ଷର : ଗୋବର ବରନା ସଖୀ ଆରେ, ସରସୀ ବାରିରୁ ରଖିଯା'ରେ ! (୪୩)

ଏବଂ ତାରାର ପାଚେରୀ ତାଡ଼ି ଦିଅ ଏବେ,

ଲୌହ ଫାଟକ ଫାଡ଼ିଦିଅ,
ଜେଲ୍‌ର ଓ୍ୱାର୍ଡ଼ର୍ ସଭିଙ୍କ ଗଳାରେ
ଧକ୍କା ମାରିଣ ତଡ଼ିଦିଅ । (୪୪)

ଅମିତ୍ରାକ୍ଷର :
ଏବଂ ବିରାଡ଼ି ମାରେ ହାଇ ଲାଙ୍ଗୁଡ଼ି
ତା'ର ହଲୁଛି ହଲୁଛି
ଟେବୁଲଟା ଚାରିକାତ ମେଲାଇ
ଘୋର ନିଦରେ ହସୁଛି
ମାଛିମାନେ ଗାଉଛନ୍ତି ଧ୍ରୁପଦ
ବର୍ଷା କାହିଁ ବର୍ଷା କାହିଁ ।
ଛାତ୍ରମାନେ ଦେବେ ନାହିଁ ପରୀକ୍ଷା
ପକ୍ୱ ଆମ୍ର ହସୁଅଛି ଗଛେ ।
ରାଜରାସ୍ତା ଜଳାକୀର୍ଣ୍ଣ
ହେଇ ପାରାବତ ଦେଉଛି ଚକ୍କର
ଲିଙ୍କ୍-ରୋଡରେ ହେଲା ଆକ୍ସିଡ଼େଣ୍ଟ
ହେଇ ଗାଇମାନେ କରନ୍ତି ପାକୁଳି ।(୪୫)

ଗାଳ୍ପିକ କେତେକ ଶବ୍ଦ ଶେଷରେ 'ବାଲା' ଶବ୍ଦର ସଂଯୋଗକରି କେତେକ ଜାତୀୟ କର୍ମ ଓ ତତ୍ କର୍ମ ସମ୍ପୃକ୍ତ ବ୍ୟକ୍ତିମାନଙ୍କୁ ସୂଚାଇଛନ୍ତି । ଯଥା : 'ପୋଲିସବାଲା', 'ରିକ୍ସାବାଲା', 'ପରିବାବାଲା', 'ଲୁଗାବାଲା', 'ଦୁଧବାଲା', 'ପ୍ରେସବାଲା', 'ପ୍ରଚାରବାଲା' ଇତ୍ୟାଦି ।

**ଆତ୍ମିକ ବୈଶିଷ୍ଟ୍ୟ :**

ପୁରୁଷାନୁକ୍ରମେ ସାହିତ୍ୟର ବିକାଶ ଓ ପରିବର୍ତ୍ତନ ହୁଏ । ଏହା ସ୍ଥିର ନୁହେଁ, ଗତିଶୀଳ । ପ୍ରତ୍ୟେକ ଯୁଗରେ ସାହିତ୍ୟରେ ଥାଏ ନିର୍ଦ୍ଦିଷ୍ଟ ଚିନ୍ତା ଓ ନିର୍ଦ୍ଦିଷ୍ଟ ଉତ୍ସାହ । ଗୋଟିଏ ଯୁଗର ରୁଚି ଅନ୍ୟ ଯୁଗର ରୁଚିଠାରୁ ଭିନ୍ନ । ତେଣୁ ଗୋଟିଏ ଯୁଗରେ ଯେଉଁ ସାମାଜିକ ଚିନ୍ତନ ପ୍ରକାଶ ପାଏ, ତାହା ଅନ୍ୟଯୁଗକୁ ବଦଳିଯାଏ । କେବଳ ରହିଯାଏ ଚିରନ୍ତନ ମାନବିକ ଭାବସତ୍ତା । ଲେଖକର ଅହଂ ଶକ୍ତିଶାଳୀ ଓ ପ୍ରଭାବଶାଳୀ ରୂପେ ସାହିତ୍ୟରେ ପ୍ରକାଶ ପାଇଲେ, ସାହିତ୍ୟ ଆଉ ଯୁଗର ସାମାଜିକ ଦଲିଲ୍ ହୋଇ ରହେନାହିଁ, ହୋଇଯାଏ ଯଥାର୍ଥ ସାହିତ୍ୟ ।' (୪୬) ଏହି ବାସ୍ତବ ସାହିତ୍ୟର ସମୁଚିତ ଦିଗକୁ ଉନ୍ମୋଚନ କରି ବସିଛନ୍ତି ହାସ୍ୟ-ବ୍ୟଙ୍ଗର ସଫଳ କଥାକାର ଫତୁରାନନ୍ଦ । ତାଙ୍କର ସୃଷ୍ଟି ସମଗ୍ର ମଧ୍ୟରେ କ୍ଷୁଦ୍ରଗଳ୍ପର ରାଜ୍ୟକୁ ଯେଉଁ ଆତ୍ମିକ ବିଭବମାନେ ଆବୋରି ବସଛନ୍ତି ସେସବୁ କେବଳ ସାମାଜିକ ଚେତନାର ଅଙ୍ଗୀକାର ମାତ୍ର ।

ଫତୁରାନନ୍ଦ ତାଙ୍କ ଗଳ୍ପ ରାଜ୍ୟରେ ଯେଉଁ ଆତ୍ମିକ ଚେତନାର ଅବତାରଣା କରିଛନ୍ତି, ସେସବୁଗୁଡ଼ିକ ତାଙ୍କର ନିତି ଆଖିଦେଖା ଅଙ୍ଗେନିଭା ଚରିତ୍ର, ଘଟଣା ଏବଂ ପରିବେଶ ପ୍ରଭୃତିର ଜୀବନ୍ତ ରୂପ । ଯାହା ତାଙ୍କୁ ଦୁଃଖରେ ଭିଜେଇ ଦେଇଛି, ଯାହା ତାଙ୍କର ହୃଦୟକୁ ଯନ୍ତ୍ରଣାରେ ଖିନଭିନ୍ କରି ପକାଇଛି ସେସବୁକୁ ନେଇ ତାଙ୍କର କ୍ଷୁଦ୍ରଗଳ୍ପର ଆତ୍ମିକ ବିଭବ ଓଡ଼ିଆ ସାହିତ୍ୟ ଜଗତକୁ ଅଧିକ ସରସ-ସୁନ୍ଦର କରିପାରିଛି । ଫତୁରାନନ୍ଦଙ୍କ କଥା ସାହିତ୍ୟ, ଯୁଗବୀଣାର ରୂପ ଧାରଣ କଲେ, ତା'ର ରନ୍ଧ୍ରଗୁଡ଼ିକ କେବଳ ଜୀବନ ଯନ୍ତ୍ରଣାକୁ ହିଁ ଝଙ୍କୃତ କରିଥାନ୍ତି । ସମାଜ, ସଂସ୍କୃତି, ସାହିତ୍ୟ, ରାଜନୀତି ଓ ଅର୍ଥନୀତି ପ୍ରତିଟି କ୍ଷେତ୍ରରେ ଗାଳ୍ପିକ ଯେଉଁ ଦୁସ୍ଥିତି-ଦୁର୍ନୀତିକୁ ବାରମ୍ବାର ଭେଟିଛନ୍ତି, ସେସବୁକୁ ସେ ଜୀବନ୍ତ ଭାବରେ ବର୍ଣ୍ଣନା କରିବସିଛନ୍ତି । ତେଣୁ ତାଙ୍କ କ୍ଷୁଦ୍ରଗଳ୍ପରେ ଆତ୍ମିକ ବିଭବର ବର୍ଣ୍ଣନା କେତୋଟି ପ୍ରମୁଖ ଭାବଧାରାକୁ ନେଇ ରଚିତ ।

**ଫତୁରାନନ୍ଦଙ୍କ କଥା ସାହିତ୍ୟରେ ଚେତନାର ଆଭିମୁଖ୍ୟ :**

ଯୁଗ ଚେତନାର ପ୍ରତିବିମ୍ବ ରୂପେ ସାହିତ୍ୟର ଅଧ୍ୟୟନ ଆମ ପାଇଁ ଏକ ନୂତନ ଚେତନା ସୃଷ୍ଟି କରେ । ଏହା ସାହାଯ୍ୟରେ ଅନ୍ୟ ଜାତିର ଓ ଅନ୍ୟ ମନ ଭିତରେ ଆମେ ବିଚରଣ କରିପାରୁ । ଫଳରେ ସାହିତ୍ୟ ଏକପ୍ରକାର ସମାଜ ତାତ୍ତ୍ୱିକ ଅଧ୍ୟୟନରେ ପରିଣତ ହୋଇଯାଏ । ଇତିହାସର ଏହା ହୋଇଯାଏ ପରିପୂରକ ଓ ଲେଖକ ଯୁଗୀୟ ଚେତନାର ସେ ପ୍ରମୁଖ ।

ରୂପକାର । ଯୁଗର ସ୍ଥିତିସ୍ଥାପକତାକୁ ପରିବର୍ତ୍ତନ କରିଦେବାର ଶକ୍ତି ମଧ୍ୟ ତା'ର ଅଛି । ଲେଖକ ଯୁଗରେ ସୀମାବଦ୍ଧ ହୋଇଯାଏ । ଯୁଗର ଭାବ ଓ ବାଣୀ ହୁଏ ତା'ର ଉପାଦାନ । ଏ ଯୁଗ ସଚେତନତାକୁ ରୂପାୟନ କରିବା ସହିତ ଯୁଗକୁ ପରିବର୍ତ୍ତନ କରିଦେବାର ବାର୍ତ୍ତା ଦିଏ, ସେ ହୋଇଯାଏ ଯୁଗାତୀତ (୪୭) ଫତୁରାନନ୍ଦ ତାଙ୍କର କ୍ଷୁଦ୍ରଗଳ୍ପରେ ଚେତନାର ଯେଉଁ ଆତ୍ମିକ ବିଭବ ପ୍ରୟୋଗ କରିଛନ୍ତି, ସେଗୁଡ଼ିକୁ ସାଧାରଣତଃ –

କ) ସାମାଜିକ

ଖ) ସାହିତ୍ୟିକ

ଗ) ସାଂସ୍କୃତିକ

ଘ) ରାଜନୈତିକ ଏବଂ

ଙ) ଅର୍ଥନୈତିକ ଇତ୍ୟାଦି ପାଞ୍ଚଗୋଟି ବିଭାଗରେ ବିଭକ୍ତ କରାଯାଇପାରେ ।

ଫତୁରାନନ୍ଦଙ୍କ କଥା ସାହିତ୍ୟକୁ ସାମଗ୍ରିକ ଭାବରେ ଆକଳନ କଲେ, ଯେଉଁ ସାମାଜିକ ସଚେତନତା ପରିଦୃଷ୍ଟ ହୁଏ, ତାହାର ଏକ ବ୍ୟଙ୍ଗାତ୍ମକ ବର୍ଣ୍ଣନା ପାଠକର ଚିତ୍ତ ଆକର୍ଷଣ କରିଥାଏ । ସାଧାରଣ ମଣିଷ ଜୀବନର ଦୁଃଖ-ସୁଖ, ଅଭାବ ଅସୁବିଧା, ହସ-କାନ୍ଦ, ଲହୁ-ଲୁହାଣ ସଂଗ୍ରାମ ସହିତ ପ୍ରତ୍ୟହ ନିତି ମରି ବଞ୍ଚୁଥିବା କଟକିଆ ମଣିଷର ଜୀବନ୍ତ ରୂପକାର ହେଉଛି ଫତୁରାନନ୍ଦଙ୍କ କଥାସାହିତ୍ୟ । ଫତୁରାନନ୍ଦ କଟକର ଚରିତ୍ରମାନଙ୍କୁ ଆନ୍ତରିକ ଭାବେ ପରଖି-ନିରେଖି ଯେଉଁ ସାମାଜିକ ଭାବବୋଧକୁ ସାଉଁଟି ଆଣିଛନ୍ତି, ତାହାକୁ ସେ ଓକାଳି ବସିଛନ୍ତି ତାଙ୍କର କଥା ସାହିତ୍ୟରେ ।

ସାମଗ୍ରିକ ଭାବେ ଫତୁରାନନ୍ଦଙ୍କ କଥା ସାହିତ୍ୟକୁ ବିଚାର କଲେ, ତାଙ୍କର ସାହିତ୍ୟିକ ଚେତନା ହିଁ ମଣିଷ ଭିତରେ ଯେଉଁ ରସାଳ ଭାବକୁ ଉଦ୍ରେକ କରେ, ତାହା ହେଉଛି, ବିରଳ ହାସ୍ୟ-ବ୍ୟଙ୍ଗର ଅନାହତ ସ୍ରୋତ । ଅନେକ ଆତ୍ମିକ ବିଭବମାନଙ୍କ ସହିତ ସମାନ୍ତରାଳ ଭାବରେ ସାହିତ୍ୟର ଜୁଆରକୁ କଥାକାର ଏତେ ଚମତ୍କାର ଭଙ୍ଗୀରେ ଯେଭଳି ପାଠକ ଚିତ୍ତର କୂଳ ଛୁଆଁଇଛନ୍ତି ତାହା ଅନ୍ୟତ୍ର ବିରଳ । ବିଭିନ୍ନ ସ୍ରଷ୍ଟା ପରି ତାଙ୍କ ସୃଷ୍ଟିର ସାହିତ୍ୟିକ ଚେତନାଟି ହେଉଛି, ଗଳ୍ପ ଜଗତର ଅନ୍ୟତମ ବିସ୍ମୟ । ଭାଷାର ରସାଳତା, ନୂତନତା, ଶାବ୍ଦିକ ବ୍ୟଞ୍ଜନା, ଢ଼ଗଢମାଳି, ଉପମାଗତ ପ୍ରୟୋଗ ପ୍ରଭୃତିର ଅନ୍ତରାଳରେ ସେ ଯେଉଁ ସାହିତ୍ୟିକ ଚେତନାର ସ୍ରୋତ ଛୁଟାଇଛନ୍ତି ସେସବୁ ତାଙ୍କୁ ଚିର ନମସ୍ୟ କରି ରଖିଥିବ ।

ଓଡ଼ିଆ ସାହିତ୍ୟରେ କେବଳ ଗଳ୍ପ କଥାବସ୍ତୁର ଅନ୍ତରାଳରେ ଓଡ଼ିଶୀ ସଂସ୍କୃତିଭିତ୍ତିକ ଚେତନାର ବିଶ୍ଳେଷଣ ଫତୁରାନନ୍ଦଙ୍କ ବ୍ୟତୀତ ଅନ୍ୟାନ୍ୟ ସାହିତ୍ୟିକଙ୍କ ସୃଷ୍ଟିରେ କାଁ ଭାଁ ଦେଖାଯାଏ । କାରଣ, ଜଣେ ସଂସ୍କୃତିପ୍ରେମୀ ଗାଳ୍ପିକ ଭାବରେ ତାଙ୍କ ରଚିର ସ୍ୱତନ୍ତ୍ର ସେଥିରୁ ସ୍ପଷ୍ଟ ବାରିହୋଇ ପଡ଼େ । ଓଡ଼ିଶାର ଓଷାବ୍ରତ, ପର୍ବପର୍ବାଣି, ସାଜସଜ୍ଜା, ଅଳଙ୍କାର, ନୃତ୍ୟ-ସଂଗୀତ-କଳା-ସ୍ଥାପତ୍ୟ ପ୍ରଭୃତିର ବ୍ୟଙ୍ଗାତ୍ମକ ବର୍ଣ୍ଣନା ମଧ୍ୟରେ

ସାଂସ୍କୃତିକ ଚେତନାର ପ୍ରାଚୀନତା ଏବଂ ସାଂପ୍ରତିକ ଓଡ଼ିଶୀ ସଂସ୍କୃତିର ଅବକ୍ଷୟର ବର୍ଣ୍ଣନା ଖୁବ୍ ଚଟୁଳ ଭାବରେ ପରଖିଥିବା ଦୃଷ୍ଟିଗୋଚର ହୁଏ ।

କଟକୀ ସଭ୍ୟତାର ସାଧାରଣ ମଣିଷ ଜୀବନକୁ ଫତୁରାନନ୍ଦ ତାଙ୍କ କଥା ସାହିତ୍ୟରେ ପରଖି ବସିଲାବେଳେ ଅର୍ଥନୈତିକ ଚେତନାଟି ଆପେ ତା'ର ସ୍ଥାନ ଆବୋରି ବସିଛି । କଟକୀ ବ୍ୟବସାୟୀ, ବହି ଦୋକାନୀ, ପାନବାଲା, ଲୁଗାବାଲା, ଧୋବା, ଭଣ୍ଡାରୀ, ଅଧ୍ୟାପକ, ଘର ମାଲିକ, ବସ୍ତିଗୁଣ୍ଡା ପ୍ରଭୃତି ଚରିତ୍ର ଓ ପରିବେଶ ବିଶ୍ଳେଷଣ ଜରିଆରେ ଚମତ୍କାର ଭାବରେ ସେମାନଙ୍କ ଅର୍ଥନୈତିକ ସ୍ଥିତିକୁ ପାଠକର ସାମ୍ନାସାମ୍ନି କରାଇବାରେ ସିଦ୍ଧହସ୍ତତା ଲାଭ କରିଛନ୍ତି ।

**ଫତୁରାନନ୍ଦଙ୍କ କଥା ସାହିତ୍ୟର ମନସ୍ତାତ୍ତ୍ୱିକ ଦିଗ :**

ଫତୁରାନନ୍ଦ ତାଙ୍କ କଥା ସାହିତ୍ୟରେ ଯେଉଁ ଅଭିନବ ହାସ୍ୟରସର ଉତ୍ତାଳ ତରଙ୍ଗ ସୃଷ୍ଟି କରିଛନ୍ତି, ସେ ସବୁ ତାଙ୍କ ଜୀବନ ଯନ୍ତ୍ରଣାକୁ ପ୍ଳାବିତ କରି ପ୍ରବାହିତ ହୋଇଛି । ପ୍ରତିଟି ଚରିତ୍ର, ଘଟଣା, ପରିବେଶ, ଆଲୋଚନା କଲାବେଳେ ତାଙ୍କର ଦୁଃଖ ଦୈନ୍ୟ ଜୀବନର ହତାଶା ଓ ନୈରାଶ୍ୟ ବର୍ଣ୍ଣିତ ହୋଇ ଥିବାର ଦୃଷ୍ଟିଗୋଚର ହୁଏ । ପିତୃହୀନ ବାଲ୍ୟଜୀବନ, ଅର୍ଥହୀନ ଓ ପ୍ରତିପତ୍ତିହୀନ ଯୌବନ, ରୋଗଗ୍ରସ୍ତ ବାର୍ଦ୍ଧକ୍ୟ, ମାନ ସମ୍ମାନ, ଯଶ କୀର୍ତ୍ତି ଏବଂ ପଦବୀ ହୀନ ଦୈନ୍ୟ ସାରସ୍ୱତ ଜୀବନ ତାଙ୍କୁ କଟକୀ ସଭ୍ୟତା ଭିତରେ ମୁଣ୍ଡ ଗୁଞ୍ଜି ବଞ୍ଚିବା ପାଇଁ ଯେଉଁ ଆଘାତ ଦେଇଛି, ତା'ର ରସାଳ ଅଭିବ୍ୟକ୍ତି ହେଉଛି ତାଙ୍କ କଥା ସାହିତ୍ୟ ।

ଫତୁରାନନ୍ଦଙ୍କ କଥା ସାହିତ୍ୟର ମନସ୍ତାତ୍ତ୍ୱିକ ଦିଗଟିକୁ ଆକଳନ କଲେ ଜଣାଯାଏ, ଯେ ସମାଜର ଉଚ୍ଚ-ନୀଚ, ବଡ଼-ସାନ, ଜାତି-ଅଜାତି, ମାଲିକ-ମୂଲିଆ, ପ୍ରଭୁ-ଭୃତ୍ୟ ଏବଂ ଧନୀ-ଗରିବ ପ୍ରଭୃତିଙ୍କ ମଧ୍ୟରେ ଯେଉଁ ମାନସିକ ବିଭେଦ ରହିଚି, ସେସବୁର ଜୀବନ୍ତ ବର୍ଣ୍ଣନା କରାଯାଇଛି । ସାହିତ୍ୟ ଜଗତରେ ରାତାରାତି କବି ବନିବାର ନିଶାରେ ଲାଞ୍ଚ, ଖଚ, ଶସ୍ତା ଶବ୍ଦ ସଂଯୋଜନା ଏବଂ ଶବ୍ଦଚୋରୀ ପ୍ରଭୃତିର ବର୍ଣ୍ଣନା ମଧ୍ୟରେ ଗୋଟିଏ ଅବହେଳିତ ପ୍ରତିଭାର ମାନସିକ ଦ୍ୱନ୍ଦ୍ୱ ରୂପାୟିତ ହୁଏ ତାଙ୍କ କଥା ସାହିତ୍ୟରେ । ଓଡ଼ିଆ ସାହିତ୍ୟର ଦୁଃସ୍ଥିତିକୁ ଦୃଷ୍ଟି ସମ୍ମୁଖରେ ରଖି ପ୍ରକାଶକ ଓ ସଂପାଦକଙ୍କର ତେଲ ମାଲିସିଆ ଚାପୁଲସି ଗୁଣକୁ ଖୋଲାଖୋଲି ବର୍ଣ୍ଣନା କରିବା ଛଳରେ ତାଙ୍କର କ୍ଷୁବ୍ଧ ଲେଖକୀୟ ପ୍ରାଣର ଖେଦ ପ୍ରକାଶ ପାଇଛି । କେବଳ କବିତା ପାଠୋତ୍ସବ, ସାହିତ୍ୟସଭା, ପୁରସ୍କାର ବିତରଣ ଉତ୍ସବ, ପୁସ୍ତକ ଉନ୍ମୋଚନ, ମାନପତ୍ର ଓ ଉପଢୌକନ ପ୍ରଦାନ, କବି ଲେଖକମାନଙ୍କର ଶ୍ରାଦ୍ଧ ଓ ଜୟନ୍ତୀ ପାଳନ ପ୍ରଭୃତିର ବ୍ୟଙ୍ଗାତ୍ମକ ବର୍ଣ୍ଣନା ମଧ୍ୟରେ ଫତୁରାନନ୍ଦ ଶକ୍ତ ଧକ୍କା ଖାଇଥିବା ଗୋଟିଏ ରୁଚିଶୀଳ ସାହିତ୍ୟିକ ପ୍ରାଣର ଦୁଃଖକୁ ବାଡ଼ି ବସିଛନ୍ତି । ଯଥାର୍ଥରେ ଗୋଟିଏ ଦୁଃସ୍ଥ ସାହିତ୍ୟିକ ଜୀବନ, ଗୋଟିଏ ଅବହେଳିତ ସାହିତ୍ୟ ଗୋଷ୍ଠୀର ପ୍ରତିନିଧି କରିଛି ତାଙ୍କ କଥା ସାହିତ୍ୟରେ । ବ୍ୟବସାୟୀ ଘର ମାଲିକ, ଭଡ଼ାଟିଆ, ପୋଲିସ୍ ଡ଼ାକୁ ଦଳ, ବଟି ଆଦାୟକାରୀ ଗୋଷ୍ଠୀ, ଅଧ୍ୟାପକ, ଡ଼ାକ୍ତର, କିରାଣୀ ପ୍ରଭୃତି କେତେକ ଚରିତ୍ରମାନଙ୍କୁ ଜୀବନ୍ତ ବିଶ୍ଳେଷଣ ପୂର୍ବକ ସେମାନଙ୍କ ଜୀବନର ବାସ୍ତବ ସ୍ୱରୂପର ପରଦା ଉନ୍ମୋଚନ କରିଛନ୍ତି ।

ଫତୁରାନନ୍ଦଙ୍କର କଥା ସାହିତ୍ୟର ମନସ୍ତାତ୍ତ୍ୱିକ ଦିଗଟିକୁ ଆକଳନ କଲେ ଜଣାଯାଏ ସବୁରି ଚରିତ୍ର, ଘଟଣା, ପରିବେଶ, କଥାବସ୍ତୁ, ନାମକରଣ, ପଶ୍ଚାତ ଭାଗରେ ଗୋଟିଏ ସଂସ୍କାରାଭିମୁଖୀ ସାହିତ୍ୟିକର ନିଷ୍ପାପ ମନଟିଏ ଉଙ୍କି ମାରିଛି । ତାଙ୍କ ଗଳ୍ପ ଜଗତର ଚତୁର୍ଦ୍ଦିଗରେ ଥରେ ମାନସିକ ଭ୍ରମଣ କଲେ, ପାଠକକୁ ଗୋଟିଏ ସଂସ୍କାର ସ୍ତୂପରେ ତଲ୍ଲୀନ ହୋଇଯିବା ପରି ମନେହୁଏ ।

**ଫତୁରାନନ୍ଦଙ୍କ କଥା ସାହିତ୍ୟରେ ଆଦର୍ଶବୋଧ :**

କଥାଶିଳ୍ପୀ ଫତୁରାନନ୍ଦ ତାଙ୍କ କଥାସାହିତ୍ୟରେ ଯେଉଁ ଆଦର୍ଶମୟ ଆଭିମୁଖ୍ୟ ସୃଷ୍ଟି କରିଛନ୍ତି, ତାହା ତାଙ୍କ ସୃଷ୍ଟି ଶିଳ୍ପର କଳାତ୍ମକ ଦିଗଟିକୁ ଅଧିକ ପ୍ରାଣବନ୍ତ କରିପାରିଛି । ଚରିତ୍ର କଥାବସ୍ତୁ, ପରିବେଶ ଘଟଣା ପ୍ରସଙ୍ଗ, ପରିବେଷଣ ଶୈଳୀ, ଭାଷା ଏବଂ ଗଳ୍ପର ପ୍ରତିଟି ଉପାଦାନରେ ଗାଳ୍ପିକ ଯଥାର୍ଥରେ ସାମାଜିକ-ରାଜନୀତିକ-ସାଂସ୍କୃତିକ-ଆଦର୍ଶବୋଧର ରସାଳ ସ୍ରୋତ ପ୍ରବାହିତ କରିଛନ୍ତି । ଗାଳ୍ପିକ, ନ୍ୟାୟ-ଅନ୍ୟାୟ, ଧର୍ମ-ଅଧର୍ମ, ପାପ-ପୁଣ୍ୟ ଏବଂ ବିଚାର -ବିମର୍ଷ ଇତ୍ୟାଦିର ଆଦର୍ଶଗତ ଭାବଧାରାକୁ ସୁଚାଇବାକୁ ଯାଇ ଯେଉଁ ବ୍ୟଙ୍ଗ

କରିଛନ୍ତି, ତାହା ତାଙ୍କର ସାମାଜିକ–ସଂସ୍କାରବାଦୀ–ଆଦର୍ଶବୋଧ ସ୍ଥପତି ପ୍ରାଣର ଯଥାର୍ଥ ପ୍ରମାଣ ପ୍ରଦାନ କରେ। ରାଜନୀତିକ କ୍ଷେତ୍ରରେ ନେତାମାନଙ୍କର କଳଙ୍କିତ ଚରିତ୍ର ଓ ସ୍ୱେଚ୍ଛାଚାରିତା ପ୍ରଭୃତିକୁ ବ୍ୟଙ୍ଗ କରି ଫତୁରାନନ୍ଦ ତାଙ୍କ କ୍ଷୁଦ୍ରଗଳ୍ପ ଜଗତରେ ଯଥେଷ୍ଟ ରାଜନୀତିକ ଆଦର୍ଶବୋଧର ଅବତାରଣା କରିଛନ୍ତି।

ସାହିତ୍ୟ ତାଙ୍କ ପାଇଁ ଗୋଟିଏ ସାରସ୍ୱତ ଅମୂଲ୍ୟ ସଂପଦ ପାଲଟି ଥିଲାବେଳେ, ଓଡ଼ିଆ ସାହିତ୍ୟ ଜଗତରେ ଗୋଟିଏ ନିରୀହ, ଅବହେଳିତ ପ୍ରତିଭାର ଜୀବନ୍ତ ପ୍ରତିନିଧି ପାଲଟିଯାଇଛନ୍ତି ସେ । ସମସ୍ତ ଯନ୍ତ୍ରଣାକୁ ଜୀବନସାରା ପିଇ ପିଇ ସେ ଯେଉଁ ଅମୃତ ଉଦ୍ଗାରିଛନ୍ତି, ତାହାହିଁ ତାଙ୍କର କଥା ସାହିତ୍ୟ କେବଳ। ଏହାର ଶୈଳୀ ମୁଖ୍ୟତଃ ହାସ୍ୟ ଓ ବ୍ୟଙ୍ଗ ହେବା ପଛରେ ଯଥାର୍ଥ କାରଣ ହେଉଛି, ଗୋଟିଏ ଆଦର୍ଶମୟ ଭାବବୋଧକୁ ସାରସ୍ୱତ ସାହିତ୍ୟ ଜଗତରେ ପରିବେଷଣ କରିବା। ଏଥିରେ ଗାଳ୍ପିକ ପ୍ରକାଶକ–ସଂପାଦକ, ବହି ଦୋକାନୀ, କବିଲେଖକ, ଔପନ୍ୟାସିକ ଓ ଅଧ୍ୟାପକମାନଙ୍କର ଚାରିତ୍ରିକ ବ୍ୟଙ୍ଗ ଦ୍ୱାରା ଓଡିଆ ସାହିତ୍ୟ ଜଗତରେ ଆଦର୍ଶର ସୁମହତ ଫଳଗୁ ବିତରଣ କରିବା ପାଇଁ ପ୍ରୟାସ କରିଛନ୍ତି ।

**ଫତୁରାନନ୍ଦଙ୍କ କଥା ସାହିତ୍ୟରେ ଜୀବନ ଦର୍ଶନ :**

ଜୀବନ ଏକ ଅବବୋଧ। ଯାହା ସାହିତ୍ୟପରି ଏକ ସାରସ୍ୱତ ପରିସରରେ ବିଛେଇ ଦେଇହୁଏ। ଜୀବନର ଯନ୍ତ୍ରଣା, ଦୁଃଖ, ଲୁହ, ନୈରାଶ୍ୟ, ହତାଶା, ନିଃସଙ୍ଗତାକୁ ଝୁଣି ଝୁଣି ଚାଲିଥିବା ଫତୁରାନନ୍ଦୀୟ କଥା ସାହିତ୍ୟ ଶୈଳୀରେ ହାସ୍ୟ ଓ ବ୍ୟଙ୍ଗକୁ ଆଧାର କରି ହୋଇଉଠିଛି ଜୀବନ୍ତ ତଥା ବାସ୍ତବ କ୍ଷତାକ୍ତ ପ୍ରାଣର ଅମଳିନ ପ୍ରତୀକ । ସାରା ଜୀବନ ଗୋଟିଏ ଅବହେଳିତ ପରିପାଟୀ ମଧ୍ୟରେ ବଞ୍ଚିଥିବା ମଣିଷଟେ ପରି ଦୁଃଖକୁ ଚିର ସହଚର କରିନେଇଥିବା ଫତୁରାନନ୍ଦଙ୍କ ଜୀବନ କାହାଣୀର ଅବିକଳ ରୂପ ଧାରଣ କରେ ତାଙ୍କର ଗଳ୍ପସମ୍ଭାର। ପିଲାଟି ବେଳରୁ ଯାହାକିଛି ଅକୁହା ରହିଯାଇଥିଲା ସେସବୁକୁ ପରିଣତ ବୟସରେ ସେ ସହ୍ୟ କରିପାରିନାହାନ୍ତି ଓ କଳି ବସିଛନ୍ତି ତାଙ୍କର ଗଳ୍ପ କଳେବରମାନଙ୍କରେ। ସ୍ରଷ୍ଟାର ସୃଷ୍ଟି ବେଶ୍ ଚମତ୍କୃତ ହୁଏ ତା'ର ସ୍ଥପତି ପ୍ରାଣର ପ୍ରୟୋଗ ଦ୍ୱାରା ଏବଂ ନିପୁଣ କଳାତ୍ମକ ଦୃଷ୍ଟିଭଙ୍ଗୀର ବ୍ୟଞ୍ଜନା ଦ୍ୱାରା। ଏହି ଦୃଷ୍ଟିକୋଣରୁ ବିଚାର କଲେ ଫତୁରାନନ୍ଦଙ୍କ କଥା ସାହିତ୍ୟ ଓଡ଼ିଆ ଗଳ୍ପ ଜଗତରେ ଗୋଟିଏ ଗୋଟିଏ କୋଣାର୍କ।

ଯେତେବେଳେ ଗୋଟିଏ ସାହିତ୍ୟ ତା' ସ୍ରଷ୍ଟାପ୍ରାଣର ଦୁଃଖ ସୁଖକୁ ନିଜ ଅଙ୍ଗରେ ରୂପଦେଇ ସମଗ୍ର ସମାଜର ଦୁଃଖ ସୁଖ ଭିତରେ ବଂଚିଥିବା ମଣିଷ ଜୀବନ ଯନ୍ତ୍ରଣାର ପ୍ରତିନିଧି କରିଥାଏ, ସେତେବେଳେ ସେ ସାହିତ୍ୟ ହୋଇଯାଏ, କାଳଜୟୀ। ଫତୁରାନନ୍ଦଙ୍କ କଥା ସାହିତ୍ୟ ତା'ର ୨୧ଟି ସଂକଳନ ମଧ୍ୟରେ ତାଙ୍କ ନିଜସ୍ୱ ଜୀବନର ଯନ୍ତ୍ରଣା ଓ ନୈରାଶ୍ୟକୁ ବହନ କରି ସମଗ୍ର ସମାଜର ଅବହେଳିତ ଦୁଃଖ ଜର୍ଜରିତ ମଣିଷର ଅକୁହା ବେଦନାକୁ ହିଁ ପ୍ରକାଶ କରିଛି । କଟକର ଚତୁର୍ଦ୍ଦିଗକୁ ବ୍ୟାପୀ ତାଙ୍କର ଗଳ୍ପ ଜଗତର ପରିବେଶ ପରିବ୍ୟାପ୍ତ ହେଲେ ମଧ୍ୟ ଓଡ଼ିଶା ଏବଂ ଭାରତବର୍ଷର ଦୁଃଖ ଯନ୍ତ୍ରଣା, ନୀତି–ଅନୀତି, ପାପପୁଣ୍ୟ, ଧର୍ମ–ଅଧର୍ମ, ଭଲ–ମନ୍ଦ ପ୍ରଭୃତିର ଜୀବନ୍ତ ରୂପ ପ୍ରଦାନ କରିବାରେ ଗାଳ୍ପିକ ସିଦ୍ଧହସ୍ତ। ତାଙ୍କର ଗଳ୍ପଜଗତ ତାଙ୍କ ଜୀବନର ଏକ ବାସ୍ତବ ଆଲେଖ୍ୟ। ଆଲୋଚନା କଲେ ଜଣାଯାଏ, ଫତୁରାନନ୍ଦଙ୍କର କ୍ଷୁଦ୍ରଗଳ୍ପର ପ୍ରତିଟି ଚରିତ୍ର, କଥାବସ୍ତୁ, ଘଟଣା, ନାମକରଣ, ବର୍ଣ୍ଣନା ବିଶ୍ଳେଷଣ ମଧ୍ୟରେ ଗାନ୍ଧୀଙ୍କର ଜୀବନ ଦର୍ଶନ ହିଁ ଅଭିପ୍ରେତ। ମଣିଷ ଜୀବନର ପ୍ରତିଟି ଉପାଦାନକୁ ସେ ଖୁବ୍ ସୁନ୍ଦର ଏବଂ ରସମୟ ଭାବ ଉଦ୍ରେକକାରୀ ଶବ୍ଦ ସଂଯୋଜନା ଦ୍ୱାରା ପରିବେଷଣ କରିଛନ୍ତି। ତାଙ୍କ କଥା ସାହିତ୍ୟର କଳେବର ତାଙ୍କ ଜୀବନର ଅବହେଳିତ ବେଦନା ଏବଂ ବିକଳ ପ୍ରାଣର ପରିଚୟ ପ୍ରଦାନ କଲାବେଳେ ସାଧାରଣ ସମାଜରେ ବାସ କରୁଥିବା ଅଭାବୀ, ନିଃସ୍ୱ ମଣିଷର ଜୀବନ ଦର୍ଶନହିଁ ପ୍ରତିଫଳିତ ହୋଇଥିବାର ଲକ୍ଷ୍ୟ କରାଯାଏ ।

**ଫତୁରାନନ୍ଦଙ୍କ କଥାସାହିତ୍ୟରେ ସୌନ୍ଦର୍ଯ୍ୟବୋଧ:**

ଫତୁରାନନ୍ଦଙ୍କ କଥାସାହିତ୍ୟର ପରିସର ହାସ୍ୟ ଓ ବ୍ୟଙ୍ଗର ଅଫୁରନ୍ତ ଭଣ୍ଡାର। କଥାରେ ବ୍ୟଙ୍ଗକୁ ମୁଖ୍ୟ ଉପଜୀବ୍ୟ କରି ଗାଳ୍ପିକ ତାଙ୍କର ଗଳ୍ପର ଶୈଳୀକୁ ଅଧିକ ପ୍ରାଣବନ୍ତ କରିଛନ୍ତି । ତାଙ୍କର ଗଳ୍ପରାଜ୍ୟର ପ୍ରତିଟି ଅଣୁ–ପରମାଣୁରେ ସାହିତ୍ୟିକ ଭାବ–ବିଭବର ମଧୁମୟ ଅଭିବ୍ୟକ୍ତି ଘଟିଛି। ତାଙ୍କର କଥା ସାହିତ୍ୟ ତାଙ୍କ ଜୀବନର ଯନ୍ତ୍ରଣା ଦଗ୍ଧ ପରିବେଶକୁ

ରସମୟ ଭଙ୍ଗୀରେ ଅଧିକରୁ ଅଧିକ ବାସ୍ତବ ଭାବେ ପ୍ରକାଶ କରିଛି। ସ୍ରଷ୍ଟା ପ୍ରାଣର ଅକୁହା ବେଦନା ସବୁ ଅହରହ ଉକୁଟି ଉଠି ତାଙ୍କ ସୃଷ୍ଟିର ମଧୁମୟ ପରିବେଶକୁ ଅଧିକ ମାନବଧର୍ମୀ ରୁଚିଶୀଳ କରି ପାରିଛି । ଯଥାର୍ଥରେ ତାଙ୍କର ଗଳ୍ପ ଜଗତଟି ସାହିତ୍ୟର ସୌନ୍ଦର୍ଯ୍ୟର ଆପଣେଇ ନେଇ ସ୍ୱତନ୍ତ୍ର ଆସନ ଦାବୀ କରିଛି । ଫତୁରାନନ୍ଦଙ୍କ ଗଳ୍ପର ବିଭବମାନେ ବିଭିନ୍ନ ସାହିତ୍ୟ ସୌନ୍ଦର୍ଯ୍ୟର ମାଧୁରିମାକୁ ବହନ କରି ପାଠକର ଚିତ୍ତ ହରଣ କରିଛନ୍ତି। ଏହି ଦିବ୍ୟ ସାରସ୍ୱତ ସୌନ୍ଦର୍ଯ୍ୟବୋଧର ଅବତାରଣା କରି ଗାଳ୍ପିକ ଫତୁରାନନ୍ଦ ତାଙ୍କର ଗଳ୍ପ ସୃଷ୍ଟି ପାଇଁ ଚିର ନମସ୍ୟ ହୋଇଯାଇଛନ୍ତି।

ଫତୁରାନନ୍ଦଙ୍କ କଥା ସାହିତ୍ୟର ସୌନ୍ଦର୍ଯ୍ୟବୋଧକୁ ବିଚାର କଲେ ଓଡ଼ିଆ ଗଳ୍ପ ଜଗତର ଗୋଟିଏ ବିଶେଷ ଦିଗ ଉନ୍ମୋଚିତ ହୋଇଯାଏ। ଏହା ହେଉଛି ହାସ୍ୟ – ବ୍ୟଙ୍ଗର ରସାଳ ଅଭିବ୍ୟକ୍ତି ଓ ପରିବେଷଣ। ନାମକରଣ (ବ୍ୟକ୍ତି/ଚରିତ୍ର/ ଅନୁଷ୍ଠାନ / ପୁସ୍ତକ/ଗଳ୍ପ/ସ୍ଥାନ ଘଟଣା), ଭାଷା ପ୍ରୟୋଗ (ଗାଳିଗୁଲଜ/ ଢ଼ଗଢମାଳି/ଲୋକଭାଷା/ଗାଉଁଲି କଥୋପକଥନ ଭଙ୍ଗୀ / ପୁରାଣର ଭାଷା/ପ୍ରାଚୀନ କାବ୍ୟ କଥନର ଭାଷା/କଟକୀ ଭାଷା/ ସଂସ୍କୃତ ଶ୍ଳୋକ) ପଦ ଓ ଶବ୍ଦର ଗୁମ୍ଫନ (ଗାଉଁଲି/କଟକୀ/ ପ୍ରାଚୀନ ବ୍ରଜ ବୋଲି/ସଂସ୍କୃତ/ଦେଶଜ/ତତ୍ସମ), ଚରିତ୍ର (ଅଧ୍ୟାପକ/ରାଜନୀତିକ ନେତା/ପ୍ରକାଶକ/ସଂପାଦକ/ବହି ଦୋକାନୀ / ବ୍ୟବସାୟୀ / ଧୋବା/ପରିବା ବିକାଳୀ/ ରିକ୍ସାବାଲା/ପୋଲିସ୍ ଚୋର/ଗୁଣ୍ଡା/ଅନୁଷ୍ଠାନର ସଭାପତି/ ସାହିମୁଖିଆ /ବସ୍ତିମୁଖିଆ/ ଘରମାଲିକ/ କବି/ଲେଖକ/ ପ୍ରଫେସର/ କିରାଣୀ/ ଡ଼ାକ୍ତର/ଓକିଲ), ପରିବେଶ (କଟକ ସ୍କୁଲ, କଲେଜ/ସାହିତ୍ୟ ଅନୁଷ୍ଠାନ/କବିତା ପାଠୋତ୍ସବ/ ସଭାସମିତି/ ପୁରସ୍କାର ବିତରଣ/ ଭୋଟ ପ୍ରଚାର) ପ୍ରଭୃତିରେ ସୌନ୍ଦର୍ଯ୍ୟର ଅବତାରଣା ତାଙ୍କର ଗଳ୍ପ ଜଗତକୁ ମହିମାମଣ୍ଡିତ କରିବା ସହିତ ସୁସାହିତ୍ୟର ଉତ୍କର୍ଷ ପ୍ରତିପାଦନ କରିବାର ଗୌରବ ଅର୍ଜନ କରିଛି।

ଫତୁରାନନ୍ଦ ତାଙ୍କ ଗଳ୍ପର ଉପାଦନଗୁଡ଼ିକରେ ହାସ୍ୟରସାତ୍ମକ– ବ୍ୟଙ୍ଗଶୈଳୀ ପ୍ରୟୋଗ କରି ସୌନ୍ଦର୍ଯ୍ୟର ଯେଉଁ ପ୍ଲାବନ ଛୁଟାଇଛନ୍ତି, ତନ୍ମଧ୍ୟରେ ନାମକରଣ ଦିଗଟି ଯଥେଷ୍ଟ ହୃଦୟାକର୍ଷୀ ଅଟେ। ଯଥା :– ବ୍ୟକ୍ତି ବା ଚରିତ୍ର 'ହତାଶ କୁମାର ମିଶ୍ର', ଲକ୍ଷ୍ମଣ ଫାଁ, ଗାଣ୍ଠୁ ସାମଲ, ଗଦେଇ, ମୁଦେଇ, ଧୋଣ୍ଡୁଆ, ଭାଲାସିଂ, ଚକମକିଆ ଦାସ, ପଚା ଷଡ଼ଙ୍ଗୀ, ଭାଲୁ ମିଶ୍ର, ଅଦେଇ, କେମ୍ପା ମଳିକ, ଡ଼ର୍ପୋକ୍ ଭୂୟାଁ, ବାସ୍ନା ଦାସ, ନାଗ ଭାଇ, ଢେମଣା ଭାଇ, ମିଷ୍ଟ ଟର୍ଣ୍ଣାଡ଼ୋ, ଦନେଇ ଦାସ, ଷୋଣ୍ଡ ପରିଡ଼ା, ହୁମାୟୁନ ଖାଁ, ବେଙ୍ଗ ଦାସ, ଧର୍ମୁସ ପଣ୍ଡା, ମେଙ୍ଗା ନାୟକ, ମୁତୁରୁ ମଳିକ, ଗିଧିନ ସାହୁ, ଭେଜାଲ୍ ଚାନ୍ଦ ଅଗ୍ରୱାଲା, ଗେନ୍ଦୁରା ଦାସ, ସପଲେଇ ମହାନ୍ତି, ମାଗା ହାବିଲ୍ଦାର, ହୟଗ୍ରୀବ ମହାନ୍ତି, ବାଙ୍କା, ମହାତ୍ମା ଭୁରୁଡ଼, ହୁରୁଦା, ପେଡିନି, ରୁଦିନି, ଦାରା ସିଂ, ଓଥଡ଼ା ଦାସ, ପାକୁଆ, ଖଣ୍ଡପ୍ପା, ଗୋଧିମିଶ୍ର, ଚେଣ୍ଟେଇ ଦେଈ, ଧନୁର୍ଦ୍ଧର ରଣା, ଖେସାରି ସାହୁ, ନୁଖୁରୁ ମିଆଁ, ମିଷ୍ଟର ଟାଇଫୁନ୍ ଇତ୍ୟାଦି। କେତେକ ବ୍ୟକ୍ତିଙ୍କ ନାମ ପରିବର୍ତ୍ତନ କରି– 'ମାୟାଧର ଗଡ଼ନାୟକ', ଗୋବିନ୍ଦାମିଆଁ, ନୀଳକଣ୍ଠ ମହାନ୍ତି, ରାଧାମୋହନ ମାନସିଂହ ଇତ୍ୟାଦି। ସ୍ଥାନ ଓ ଅନୁଷ୍ଠାନରେ ତୋଫାନ୍ ସାହାଯ୍ୟ ସମିତି, ସଂକଟତ୍ରାଣ ସମିତି, କାଙ୍ଗାଳିଆ ପ୍ରେସ୍, ଚୁଡ଼ଙ୍ଗ କଲେଜ, ଚନ୍ଦେଇପୁର ଥାନା, ଭାଲୁମେଦ ଗାଁ, ଅଣ୍ଡିରା ସାହି, ଛିଙ୍କ କମିଶନ, କୁଣ୍ଡେଇ କମିଶନ, ଘଡ଼ଘଡ଼ି ମେସ୍, ତନରଡ଼ା ସହର, ହିଡ଼ିମ୍ବା ହାଇସ୍କୁଲ, ଷ୍ଟୁପିଡ଼୍ କ୍ଲବ, କାଛୁଆ ସାହି, ଘୁଷୁରୀ ଦଳ, ଅବଲୋକରା ରାଜ୍ୟ, ବାଣୀ ମଇଦାନ ଇତ୍ୟାଦି । ପୁସ୍ତକ– 'ଅମୃତ ବେହିଆ', 'ଅବଲୋକରା ରାଜ୍ୟ', 'ନିଦା ବେହଲ', 'ସାହିତ୍ୟ ବେଉଷଣ', 'ହେରେସା', 'ନବଜିଆ', 'ବୃହତଭାଣ୍ଡ', 'ମସ୍କରା', 'ବିଦୂଷକ', 'ହସକୁର' ଇତ୍ୟାଦି। ଗଳ୍ପର ନାମ : ଘିଝର୍‌ର, ଗୁଗୁରି ପେଞ୍ଚ, ହେଙ୍କଡ଼ଧୁନା, ଓଡ଼ିଓପ୍ୟାଥି, ଭଣ୍ଡୁର ଭୋପା, କାଟେଣୀ ଓଷଦ, ଚୁଙ୍ଗୁ ଚୁଙ୍ଗିଆ ବାଙ୍କ, ଗବଦଲ୍ ଖାସୁ , କାତୁମର୍ଦ୍ଦନ, ଚୋପାଛଡ଼ା ଆଟମ୍ ଇତ୍ୟାଦି। କବିମାନଙ୍କର ନାମ : କଷିକବି, ଗଜାକବି, ଭୂଆ କବି , ଝାମ୍ପୁରା ମୁଣ୍ଡିଆ କବି, ରଣପା କବି, ବ୍ଲାଷ୍ଟ ଫର୍ଣ୍ଣେସ କବି ଇତ୍ୟାଦି। ସାହିତ୍ୟ ସଂସଦର ନାମ : ଓଡ଼ିଆ ସାହିତ୍ୟ ସଂସଦ, ବିଜୁଳି ତୋଫାନ, ବୁବେିରେ ସାହିତ୍ୟ ସଂସଦ, ଦୁନ୍ଦୁଭି ସାହିତ୍ୟ ସଂସଦ ଇତ୍ୟାଦି। ପତ୍ରିକାର ନାମ : ଶିଳପୁଆ, ଖଣ୍ଡିଆ ଭୂତ, ମାନ୍ଦ୍ରାଜ ମୂଳା, ତୋ, ଘଡ଼ଘଡ଼ି, ରଗଡ଼, ରକେଟ୍– ହାବେଳୀ ବୀଣା, ଟୋକେଇ, ଚୁଚୁନ୍ଦ୍ରା, ମୃଦଙ୍ଗ, ଧୂମକେତୁ

ଇତ୍ୟାଦି । ଚାକିରୀ-କର୍ମ ତଥା ବୃତ୍ତି ବିଶେଷ ଖେପାଜାଲରେ କୁମ୍ଭୀର, ସୁଟ୍ କେଶ ଟେଲିଫୋନ୍, ଡ଼ାକ୍ତର ବଦଳୀ, ଚୋରା ଚାକିରୀ, ଘରୋଇ ଚିକିତ୍ସା ନିଷେଧ ଆଦି ଗଳ୍ପରେ ଚାକିରୀ ବୃତ୍ତି ପ୍ରତି ଗାଳ୍ପିକ ବ୍ୟଙ୍ଗ ବିଦ୍ରୁପର ଶୈଳୀ ପ୍ରୟୋଗ ଦ୍ୱାରା ସାହିତ୍ୟିକ ସୌନ୍ଦର୍ଯ୍ୟକୁ ଅଧିକ ତ୍ୱରାନ୍ୱିତ କରିଛନ୍ତି । ରାଜନୀତିକ ନେତା ଓ ଶାସକ ପ୍ରଭୃତିଙ୍କୁ ଭୋଟ୍ ଗଳ୍ପ ସଂକଳନସ୍ଥ ଗଳ୍ପମାନଙ୍କ ଜରିଆରେ ଯଥେଷ୍ଟ ବ୍ୟଙ୍ଗ କରି, ସୌନ୍ଦର୍ଯ୍ୟବୋଧର ଅନନ୍ୟ ରୂପ ପ୍ରକାଶ କରିଛନ୍ତି ।

ଫତୁରାନନ୍ଦଙ୍କର ଗଳ୍ପ ସାହିତ୍ୟରେ ଶବ୍ଦର ଯାଦୁକରୀ ପ୍ରୟୋଗ ବ୍ୟଙ୍ଗାତ୍ମକ ଶୈଳୀର ହେଲେ ମଧ୍ୟ ଏଥିରେ ସୌନ୍ଦର୍ଯ୍ୟର ଅବତାରଣା ତାଙ୍କର ଗାଳ୍ପିକ-ପ୍ରାଣକୁ ଅଧିକ ଉପମାମଣ୍ଡିତ କରିପାରିଛି । ଭୋଟ୍‌ଲିନ୍ ବଟିକା, ଗୁଲିଆର୍ ମାନେ, ସର୍ବହରା ବୋମା, ଡ଼ବଲଫିଙ୍ଗଲ, ଲେଣ୍ଡାଏ ଛେପ, ଲାଇସନ, କାଂଟୁଆ, ଆଗମାର୍କ, କାଟପାଣି, ଦି ଚକିଆ ଜିପ୍, ଫାଳିକିଆ ବଜାର, ଭୁରକୁଣ୍ଡା, ଗଣଗାଣ ସରକାର, କୁମ୍ଭକର୍ଣ୍ଣ ପଛୀ, ନିକମାଦଳ, ଫଉଁଗଣ ଫ୍ୟାତି ଇତ୍ୟାଦି ଓ ବାକ୍ୟ ମଧ୍ୟରେ : ଦୋକାନରେ ପ୍ରବେଶ କରିବା ମାତ୍ରେ ଫଗୁଆର ତିଖା କାନ ବିକାଳିମାନଙ୍କ ଫୁସ୍‌ଫାସ୍ କଥାବାର୍ତ୍ତାରୁ ଅଳ୍ପ କିଛି ଶୁଣିପାରିଲା । ମାହିଆ ସାହି ଗୋଟାକାଙ୍କର ତ ଭାରି ହିମତ ହୋଇଗଲାଣି, ଇତ୍ୟାଦି ।

ଉପମାର ପ୍ରୟୋଗରେ : ବାଳିଆମାଛର ଫାଳିଆ ପାଟି ପରି ପାଟିଟା ମେଲା କରି ବଟିଆ ଗୋଟାଏ ବଡ଼ ହାଇମାରି ତୃପ୍ତ ହୋଇସାରିବା ପରେ କହିଲା, ଆଃ ! ଚମ୍ପାବସ୍ ଭାଙ୍ଗ ଉପରେ ଚଉକସ ଭୋଜନ ଟାଏ ମିଳିଯାଇଥିଲା, ବ୍ରହ୍ମପୁରୀ କଲି ସାଙ୍ଗକୁ ପାହାଳ ରସଗୋଲା, ଦେଲି ତ ଠେଁସି (୪୮)

**କଟକୀ ଭାଷାର ପ୍ରୟୋଗ :**

'ବାବୁ ଚାନ୍ଦା ଲବାକୁ ଆସିଛି !'
'କି ଚାନ୍ଦା, କାହିଁକି ।'
'ମା'ଦେବା 'ଚାନ୍ଦା ।'
'ମା' ଦେବ ମୋର କ'ଣ କରିପକାଉଛନ୍ତି ଯେ, ମୁଁ ଚାନ୍ଦା ଦେବି ?'

**ପୁରୀ ଭାଷାର ପ୍ରୟୋଗ :**

'ବେହିପ ଯାହାଙ୍କ ନାଁ ଯୋଖା ହୋଇଛି, ସେହିମାନେ ଯାଆନ୍ତୁ ।' 'ବେହିପ, ଆମ ଜେଗା, ପରା ଉତ୍କଳ ଆମେ ଭଲ ।'

**ବାଲେଶ୍ୱରିଆ ଭାଷା :**

'ମର୍ ଗୁଡ଼ ବଥଉଚି । ସେଠକି ଜିମି !'

**ସମ୍ବଲପୁରିଆ ଭାଷା :**

'ଶଳେଙ୍କ ପାସ୍ ନାହିଁ ଯିବାର । ନିଜ ଥାନର ନାଁ ଦେଇଛନ୍, ଆମେ କଣ କିଛି ନାହିଁ ଜାଣିଛୁ ? ଶଳେଙ୍କ ପାଶ୍ ନାହିଁ ବସିବା ।'

**କଟକିଆଙ୍କ ଭାଷା :**

'ଶଳାକୁ ହାମର ନାଁ ଲ ରହିବତ,
ହାମେ ଶଳାକୁ କାହିଁକି ଯିବା ।
ହାମେ ଗୋଟାଏ ଅଲଗା କରିଲବା ।'

**ଗଞ୍ଜାମିଆଁ ଭାଷା :**

'ତାଙ୍କେ ତ ବଡ଼ ଆଲରା ପାଇଟି କରୁଛନ୍ତି ।
ଆଙ୍କେ ସେଠି ନାହିଁ ଯିବାର ଏକକା ।
ଆମର ଚାରୁ ଭଲ କି ଆମେ ଭଲ ।' (୪୯)

ଫତୁରାନନ୍ଦଙ୍କ କଥା ସାହିତ୍ୟରେ ଅନେକ ଅଞ୍ଚଳର ଲୋକକଥିତ ଭାଷାର ପ୍ରୟୋଗ ସହିତ କଟକୀ ଭାଷା ମୁଖ୍ୟ ସ୍ଥାନ ଗ୍ରହଣ କରିଛି ।

ଲାଳିକା : ଢଗଢମାଳିର ପ୍ରୟୋଗ : ଫତୁରାନନ୍ଦ ତାଙ୍କ ଗଳ୍ପ ସାହିତ୍ୟରେ ଯେଉଁ ଲାଳିକା ତଥା, ଜଗଢମାଳି ଆଦିର ପ୍ରୟୋଗ କରିଛନ୍ତି, ସେସବୁରେ ଆଦିସ୍ରଷ୍ଟା ଫକୀରମୋହନ ସେନାପତି ଏବଂ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କୁ ଅନୁକରଣ କରିଥିବାର ହୃଦ୍‌ବୋଧ ହୁଏ । କପିବାଜଙ୍କ 'ଜୁଆରଭଟ୍ଟା' ଗଳ୍ପରେ ଲାଳିକାର ପ୍ରୟୋଗ କରି ଫତୁରାନନ୍ଦ ଲେଖିଛନ୍ତି, ଅପଠିତ ବିଦ୍ୟା ପୂରିତ ଗାତ୍ରେ, ଟିକିଟିକି ଅକ୍ଷର ଶୋଭିତ ପତ୍ରେ । ଗୁପ୍ତ ପକେଟେ ଲୁଚିଥାଆ ସୁଝେ, ଭଗବତୀ ମା'

କପିଦେବୀ ନମସ୍ତେ ।' ପ୍ରଶଂସା, ତିରସ୍କାର, ଜରିଆରେ ତାଙ୍କ କଥା ସାହିତ୍ୟରେ ଗାଳ୍ପିକ, ଯେଉଁ ସୌନ୍ଦର୍ଯ୍ୟବୋଧର ପ୍ରୟୋଗ କରିଛନ୍ତି, ତାହା ଅନ୍ୟତ୍ର ବିରଳ । ଯଥା : ସାହେବଙ୍କ ମଟର ଗାଡ଼ି ଡ଼ାକ୍ତରଖାନା ଦୁଆର ମୁହଁରେ ଠିଆ ହେଲା । ଡ଼ାକ୍ତରବାବୁ ନମସ୍କାରଟିଏ କରି ମଟର ଗାଡ଼ି ଦୁଆରଟା ଖୋଲି ଦେଲେ । ସାହେବ ଭିଡ଼ି ମୋଡ଼ି ହୋଇ ଗାଡ଼ି ଭିତରୁ ସତେଯେମିତି ଜନ୍ମ ହୋଇପଡ଼ିଲେ । ପ୍ରଥମ ସାକ୍ଷାତଟା କିନ୍ତୁ ସାହାବଙ୍କୁ କୁଇନାଇନ୍ ଚାଟିଲା ପରି ଲାଗିଲା । ଡ଼ାକ୍ତରଟା କେଡ଼େ ଗାଉଁଲି ! ଟୋକାଟାଏ ହୋଇଥିଲେ ସୁଦ୍ଧା କେଡ଼େ ମରହଟ୍ଟୀ । କରମର୍ଦ୍ଦନ କରିବାକୁ ହାତ ନ ବଢ଼େଇ କରୁଛି ନମସ୍କାର ! ରବିସ୍, ରବିସ୍‌ଦ ! (୫୦) ଏହି ସଂଳାପରେ ଭାରତୀୟ ସଂସ୍କୃତି ଓ ପରମ୍ପରାକୁ ଡ଼ାକ୍ତର ରକ୍ଷା କରିଥିବାରୁ ଫତୁରାନନ୍ଦ ତିରସ୍କାର ମାଧ୍ୟମରେ ପ୍ରଚ୍ଛନ୍ନ ପ୍ରଶଂସା କରିଛନ୍ତି । ଏହି ବ୍ୟଙ୍ଗାତ୍ମକ ଶୈଳୀର ବ୍ୟଞ୍ଜନା ଅନ୍ତରାଳରେ ଯେଉଁ ସୌନ୍ଦର୍ଯ୍ୟ ପ୍ରକଟିତ ହୋଇଛି ତାହା ଗାଳ୍ପିକଙ୍କର ମହନୀୟତା ପ୍ରତିପାଦନ କରେ ।

ଫତୁରାନନ୍ଦ ତାଙ୍କ କଥା ସାହିତ୍ୟରେ ଅନେକ ଢ଼ଗଢମାଳିର ପ୍ରୟୋଗ କରିଛନ୍ତି । ଯଥା : କଂସାରୀ ଘରର ପାରା, ତାକୁ କୁଲାଡ଼ାଉଁ ଡ଼ାଉଁ ଡ଼ରା, ନିଜ ହାତରେ ନିଜ ଗୋଛି କାଟିବା, ମହାଦେବଙ୍କ ବୁଲାଷଣ୍ଢ, ମାଙ୍କଡ଼ଚିତ୍ ମାରିବା ଇତ୍ୟାଦି । ଗାଳ୍ପିକ କଟକୀ ଏବଂ ନିପଟ ଗାଉଁଲୀ ଭାଷାର ଅନେକ ଗାଳିଗୁଲଜକୁ ତାଙ୍କ ଗଳ୍ପରେ ଅତି ଚମତ୍କାର ଭାବରେ ରୂପାୟିତ କରିଛନ୍ତି । ଯଥା : ସଇତାନ୍, ଚୁପସଇତାନ୍, ହାରାମ, ଟାଉଟରି, ଲଫଙ୍ଗା, ଛତରା, ବାଲୁଙ୍ଗା, ଅଜଗଣ୍ଡିଆ, ବାଡ଼ିପଶା, ମାଙ୍କଡ଼ମୁହାଁ, ଗାତପଶା, ଯୋଗଣିଖିଆ, ଝାଡ଼ାଖୋଇଆ, ଚୁଟୁନ୍ଦ୍ରିଆ, ଛୁଞ୍ଚିମୁହାଁ, ଅଭଦ୍ର, ଲଣ୍ଡଭଣ୍ଡିଆ, ଅଳପେଇସା ଇତ୍ୟାଦି । ଜଣେ ସଫଳ ସ୍ରଷ୍ଟା ତା' ସୃଷ୍ଟିର ଅନ୍ତରାଳରେ ସମାଜ ସଚେତନଧର୍ମୀ ଆଭିମୁଖ୍ୟର ବାର୍ତ୍ତା ବହନ କରିଥାଏ । ଫତୁରାନନ୍ଦ ଗଳ୍ପ ସାହିତ୍ୟ ସେହି ନୈତିକ ଆଭିମୁଖ୍ୟର ବାର୍ତ୍ତାବହ ସାଜିଛି । ସଂସ୍କାରବାଦିତା, ତାଙ୍କ ଗଳ୍ପର କେନ୍ଦ୍ରବିନ୍ଦୁ ପାଲଟିଛି । ଚରିତ୍ରମାନଙ୍କ ଜରିଆରେ ସେ ସାମାଜିକ, ସାଂସ୍କୃତିକ ଏବଂ ରାଜନୀତିକ ସଂସ୍କାର ଆନୟନରେ ସଚେଷ୍ଟପ୍ରାଣ ହୋଇଉଠିଛନ୍ତି । ବିଭିନ୍ନ ଅନ୍ଧବିଶ୍ୱାସ, ଅବାଞ୍ଛିତ, ସାମାଜିକ ପ୍ରଥାକୁ ବ୍ୟଙ୍ଗ କରି ଫତୁରାନନ୍ଦ ଯେଉଁ ନୈତିକ ସଂସ୍କାର ଆଣିଛନ୍ତି ତାହା ତାଙ୍କ ସୌନ୍ଦର୍ଯ୍ୟପ୍ରାଣର ପରିଚୟ ପ୍ରଦାନ କରେ । ଓଡ଼ିଆ କାବ୍ୟ ଜଗତରେ ସ୍ୱପ୍ନପ୍ରବଣ କବିପ୍ରାଣ ଯେଭଳି ସ୍ୱପ୍ନ ପ୍ରସଙ୍ଗର ଅବତାରଣା କରି କାବ୍ୟିକ ସୌନ୍ଦର୍ଯ୍ୟର ଆନୟନ କରିଥାନ୍ତି ସେହିପରି ଗାଳ୍ପିକ ଫତୁରାନନ୍ଦ ତାଙ୍କ କ୍ଷୁଦ୍ରଗଳ୍ପ ରାଜ୍ୟରେ ସ୍ୱପ୍ନ ପ୍ରସଙ୍ଗର ଅବତାରଣା ମଧ୍ୟରେ ସୌନ୍ଦର୍ଯ୍ୟର ଶୈଳ୍ପିକ ମାନ ଅଭିବୃଦ୍ଧି କରିଛନ୍ତି ।

ଫତୁରାନନ୍ଦଙ୍କ କଥା ସାହିତ୍ୟର ବିଶିଷ୍ଟ ସୌନ୍ଦର୍ଯ୍ୟ ବର୍ଦ୍ଧନକାରୀ ଦିଗଟି ହେଉଛି ହାସ୍ୟରସାତ୍ମକ ଶୈଳୀ । ଯାହା ଗାଳ୍ପିକଙ୍କୁ ଆଧୁନିକ ଓଡ଼ିଆ ଗଳ୍ପ ଜଗତରେ ଅନନ୍ୟ ସ୍ଥାନ ପ୍ରଦାନ କରେ । ତାଙ୍କର ବ୍ୟଙ୍ଗାତ୍ମକ ରଚନାର ଅନ୍ତରାଳରେ ଅଛି ସମାଜ କଲ୍ୟାଣକାରୀ ଏକ ସତୃଷ୍ଣ ମାନସ । ତାଙ୍କର ସେହି ଅନନ୍ୟ ଶୈଳୀକୁ ଗାଳ୍ପିକଙ୍କର ବ୍ୟକ୍ତିତ୍ୱରୁ ଭିନ୍ନ କରିହୁଏ ନାହିଁ । ସେ ଆତ୍ମବ୍ୟଙ୍ଗ ପରାୟଣ, ଆତ୍ମ ସଚେତନ ମଣିଷଟିଏ ମାତ୍ର । ନିଜକୁ ନିଜର ଚୈତନ୍ୟ ବହ୍ନିରେ ଦଗ୍ଧ କରିବା ଭିନ୍ନ ସେ ପ୍ରାୟ ଆଉ କିଛି କରିନାହାନ୍ତି । ସେ ହିଁ ଅସଙ୍ଗତ ଜୀବନ ମାଟିର ସୂତ୍ରଧର । ସେ ବିଦୂଷକ । ସେ ହସେ, ହସାଏ ଓ ହାସ୍ୟାସ୍ପଦ ହୁଏ । ତାହା ବିନୁ ଅନ୍ୟ କେହି ନାହିଁ । କିଂଭୂତ ପାତ୍ରଟିଏ ସେ । (୫୧) ଭାଷା, ଶବ୍ଦ, ଚରିତ୍ର ବିଶ୍ଳେଷଣ, ଘଟଣାପ୍ରସଙ୍ଗ, ସର୍ବୋପରି କଥାବସ୍ତୁର ଅବତାରଣା ଓ ନାମକରଣରେ ତାଙ୍କର ବ୍ୟଙ୍ଗାତ୍ମକ ପ୍ରୟୋଗ ସାମଗ୍ରିକ ଗଳ୍ପ ଜଗତକୁ ସୌନ୍ଦର୍ଯ୍ୟର ପରିପାଟୀରେ ବିମଣ୍ଡିତ କରିଛି । ଫତୁରାନନ୍ଦଙ୍କ ବ୍ୟକ୍ତିତ୍ୱ ଏହି ସୌନ୍ଦର୍ଯ୍ୟ ପ୍ରୟୋଗରୁ ଆପେ ବାରି ହୋଇପଡେ । ଗାଳ୍ପିକଙ୍କର ବ୍ୟଙ୍ଗାତ୍ମକ ଦିଗଟି ତାଙ୍କ ଶିଳ୍ପୀପ୍ରାଣର ସାର୍ଥକତା ପ୍ରତିପାଦନ କରେ ।

ଓଡ଼ିଆ ବିଭାଗ
ପ୍ରାଣନାଥ ସ୍ୱୟଂଶାସିତ ମହାବିଦ୍ୟାଳୟ
ଖୋର୍ଦ୍ଧା

**ସହାୟକ ଗ୍ରନ୍ଥସୂଚୀ**


| କ୍ର.ନଂ. | ଲେଖକ/ପୁସ୍ତକ | ପୃଷ୍ଠା |
|---|---|---|
| ୧. | ଫତୁରାନନ୍ଦ/ସାହିତ୍ୟ ବେଉଷଣ | ୨୯ |
| ୨. | ଫତୁରାନନ୍ଦ/ସାହିତ୍ୟ ବେଉଷଣ | ୩୯ |

୩. ଫତୁରାନନ୍ଦ/ହସକୁରା ୧୩୧
୪. ଫତୁରାନନ୍ଦ/ହସକୁରା ୧୩୦
୫. ଫତୁରାନନ୍ଦ/ବିଦୂଷକ ୪–୫
୬. ଫତୁରାନନ୍ଦ/ବିଦୂଷକ ୪୫
୭. ଫତୁରାନନ୍ଦ/ବିଦୂଷକ ୯୩
୮. ଫତୁରାନନ୍ଦ/ବିଦୂଷକ ୮୯
୯. ଫତୁରାନନ୍ଦ/ମସ୍କରା ୪
୧୦. ଫତୁରାନନ୍ଦ/ନବଜିଆ ୮୭–୮୮
୧୧. ଫତୁରାନନ୍ଦ/ଭୋଟ ୯୯
୧୨. ଫତୁରାନନ୍ଦ/ବୃହତ ଭାଣ୍ଡ ୨୩
୧୩. ଫତୁରାନନ୍ଦ/ନବଜିଆ ୧୬
୧୪. ଫତୁରାନନ୍ଦ/ସାହିତ୍ୟ ବଛାବଛି ୧୫
୧୫. ଫତୁରାନନ୍ଦ/ମଙ୍ଗଳବାରିଆ ସାହିତ୍ୟ ସଂସଦ ୯୧
୧୬. ଫତୁରାନନ୍ଦ/ନିଦାବେହେଲ ୫୯
୧୭. ଫତୁରାନନ୍ଦ/ସା.ବେ ୭୫
୧୮. ଫତୁରାନନ୍ଦ/ହେରେସା (ଗୁଗୁରିପେଞ୍ଚ) ୧୪
୧୯. ଫତୁରାନନ୍ଦ/ମସ୍କରା (ନିରାକାର କଲେଜ) ୨୭
୨୦. ଫତୁରାନନ୍ଦ/ନିଦାବେହେଲ ୭
୨୧. ଫତୁରାନନ୍ଦ/ମ.ବା.ସା.ସଂ (କବିଭେଦ) ୨୨
୨୨. ଫତୁରାନନ୍ଦ/ସାହିତ୍ୟ ବଛାବଛି ୩୭
୨୩. ଫତୁରାନନ୍ଦ/ଅମୃତ ବେହିଆ ୪୧
୨୪. ଫତୁରାନନ୍ଦ/ଅମୃତ ବେହିଆ ୪୨
୨୫. ଫତୁରାନନ୍ଦ/ଅମୃତ ବେହିଆ ୪୫
୨୬. ଫତୁରାନନ୍ଦ/ଅମୃତ ବେହିଆ ୬୧
୨୭. ଫତୁରାନନ୍ଦ/ଅମୃତ ବେହିଆ ୬୪
୨୮. ଫତୁରାନନ୍ଦ/ଅମୃତ ବେହିଆ ୭୭
୨୯. ତତ୍ରୈବ ୯୨
୩୦. ଫତୁରାନନ୍ଦ/ମୁଚୁକୁନ୍ଦିଆ ୬୦
୩୧. ଫତୁରାନନ୍ଦ/ତତ୍ରୈବ ୧୦୩
୩୨.. ଫତୁରାନନ୍ଦ/ତତ୍ରୈବ ୧୧୩
୩୩.. ଫତୁରାନନ୍ଦ/ଅମୃତ ବେହିଆ ୨୭
୩୪.. ଫତୁରାନନ୍ଦ/ଭୋଟ ୧୪୫
୩୫.. ଫତୁରାନନ୍ଦ/ସାହିତ୍ୟ ବଛାବଛି ୪୫
୩୬.. ଫତୁରାନନ୍ଦ/ବୃହତ ଭାଣ୍ଡ ୪୧
୩୭.. ଫତୁରାନନ୍ଦ/ମସ୍କରା ୭
୩୮.. ଫତୁରାନନ୍ଦ/ମସ୍କରା ୬୦
୩୯.. ଫତୁରାନନ୍ଦ/ମସ୍କରା ୭୯
୪୦.. ଫତୁରାନନ୍ଦ/ମସ୍କରା ୮୭
୪୧.. ଫତୁରାନନ୍ଦ/ସା.ବେ. ୬
୪୨.. ଫତୁରାନନ୍ଦ/ସା.ବେ. ୭
୪୩. ଫ/ସା.ଚା. ୬୮
୪୪. ଫ/ସା.ଚା. ୯୦
୪୫. ଫ/ସାହିତ୍ୟ ବଛାବଛି ୧୭
୪୬. ଡ. ବୈଷ୍ଣବ ଚରଣ ସାମଲ – ଓ.କ୍ଷୁ.ଇ ୩୮୯
୪୭. ଡ. ବୈଷ୍ଣବ ଚରଣ ସାମଲ – ତତ୍ରୈବ – ଓ.କ୍ଷୁ.ଇ ୩୮୯
୪୮. ଡ. ବିଜୟାନନ୍ଦ ସିଂ – ଫ.ଙ୍କ ସୃଷ୍ଟିରେ ହାସ ୨୩୦
୪୯. ତତ୍ରୈବ ୨୩୫
୫୦. ତତ୍ରୈବ ୨୩୯
୫୧. ତତ୍ରୈବ ୨୩୫



# ଗନ୍ଧର୍ବ ବେଦ ବୁଦ୍ଧ ଖାରବେଳ

ପ୍ରଫେସର ବିଜୟିନୀ ମହାନ୍ତି
ସୁଶିଲ କୁମାର ପଟ୍ଟନାୟକ

ଆଜି ଇତିହାସ ପୃଷ୍ଠା ଖୋଲିଲେ, କଳିଙ୍ଗର ବହୁମୁଖୀ ପ୍ରତିଭାର ପ୍ରମାଣ ମିଳେ । ଜନଶ୍ରୁତି ବା ଲୋକକଥା କେତେ ଦିନକୁ ତିଷ୍ଠି ପାରେ ? କେତେଟା ପୁରୁଷ ଅବଧିରେ ସମୟ ସ୍ରୋତରେ ଲୀନ ହୋଇଯାଏ । ତାଳପତ୍ର ବା ଭୁଜପତ୍ର ରଚନା କେତେ କାଳକୁ ବା ସନ୍ତକ ହୋଇପାରେ ? ଯେତେ ଯତ୍ନରେ ସଞ୍ଚିଲେ ବି ଯୁଗ କେତେଟାରେ ପୋପରା ହୋଇଯାଏ । ଏଥିପାଇଁ ପୁରାତନ କାଳରେ ବୁଦ୍ଧିମାନ ରାଜାମାନେ ନିଜର ଅକ୍ଷୟ କୀର୍ତ୍ତି ଲୋକପ୍ରିୟ ଓ ଜନ ସମାଗମ ଥିବା ପାହାଡର ପଥର ଉପରେ ଶିଳାଲିଖନ କରି ନିଜର ଉପସ୍ଥିତି କାମନା କରୁଥିଲେ । ସେମାନଙ୍କର ନିଶ୍ଚୟ ମନରେ ଅଭିପ୍ରାୟ ଥିବ, ଦୂର ଭବିଷ୍ୟତରେ ଲୋକ ବଦଳିଯାଇ ପାରନ୍ତି, ଭାଷା ବଦଳି ପାରେ କିନ୍ତୁ ସମ୍ଭବତଃ କେହି ଜଣେ ଏହାକୁ ସମସାମୟିକ ଭାଷାରେ ଅନୂଦିତ କରିପାରିବେ । ଲେଖାର ମହତ୍ତ୍ୱ ସମାଜରେ ପ୍ରକଟିତ ହେବ । ରାଜା ଆଉ ତାଙ୍କର ମହନୀୟ ମନୋଭାବ ଦୁନିଆଁ ଜାଣିବ । ଭବିଷ୍ୟତ ପାଇଁ ଏମିତି ଘଟଣା ଖୋଲି ଦେବ, କେହି ବିଶ୍ୱାସ କରିବେ ନାହିଁ ।

ସତରେ ବହୁ ପୁରାତନ ଘଟଣା ଅବଲୋକିତ ହୋଇଛି ଶିଳାଲିଖନରୁ, ଇତିହାସର ପୃଷ୍ଠା ପୃଷ୍ଠା ଯୋଡା ହୋଇଛି । ଭାରତର ଇତିହାସ ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କୁ ନିର୍ଣ୍ଣୟ କରିଛି ଆନୁମାନିକ ଭାବରେ ମୁଦ୍ରା ରାକ୍ଷସ ପରି ରଚିତ ନାଟିକାରୁ, ସୁଦୃଢ କରିଛି ଅଶୋକଙ୍କ ଶିଳାଲିଖନରୁ, ମାସିଡୋନିଆର ମେଗାସ୍ଥିନିସ୍‌ଙ୍କ ଚଂଡ୍ରୋସ୍ ନାମକ ମହାରାଜାଙ୍କ ବର୍ଣ୍ଣନାରୁ । ସେମିତି ସାରା ଭାରତ ଓ ଭାରତ ବାହାର ଶିଳାଲିଖନରୁ ଅଶୋକ ବର୍ଦ୍ଧନ ମୌର୍ଯ୍ୟଙ୍କ ଅନୂଦିତ ଘଟଣା ପ୍ରବାହ ଆଖି ଖୋଲିଛି ସମାଜ, ଧର୍ମ, କଳିଙ୍ଗ ଯୁଦ୍ଧ, ବୁଦ୍ଧ ଧର୍ମ, ଧର୍ମପ୍ରବାହର ଗମନାଗମନ ପଥ, ଦେଶାନ୍ତର ଯାତ୍ରା ବିଷୟରେ । କିନ୍ତୁ ଅଶୋକ ଚଣ୍ଡାଶୋକରୁ ଧର୍ମାଶୋକ ହେଲେ ବି ତାଙ୍କ ମନରେ ସମ୍ପୂର୍ଣ୍ଣ ଉଦାରତା ଜନ୍ମ ନେଇ ପାରି ନଥିଲା ।

ହାତୀଗୁମ୍ଫା ଶିଳାଲିଖନ ସମୟକ୍ରମେ ମୁକ୍ତାକାଶର କ୍ଷୟିଷ୍ଣୁ ଶକ୍ତିରେ ବହୁ ଅଂଶରେ ପ୍ରକୃତି ଗର୍ଭରେ ଲୀନ ହୋଇଯାଇଛି, ତଥାପି ଯେତିକି ତଥ୍ୟ ପଠିତ ଲିଖନରୁ ପ୍ରତିପାଦିତ ହୁଏ, ଖ୍ରୀଷ୍ଟ ଜନ୍ମର କେତେ ଶତାବ୍ଦୀ ପୂର୍ବର ଇତିହାସର ଅନ୍ଧକାରମୟ ଅଭ୍ୟନ୍ତରକୁ ପଶିବାରେ ଗୋଟିଏ ମଶାଲ ପରି ନିର୍ଣ୍ଣାୟକ ମନେ ହୁଏ । କେବଳ ନନ୍ଦ, ମୌର୍ଯ୍ୟ, ଯବନ, ସାତକର୍ଣ୍ଣୀ, ମଥୁରା, ଗୋରଥଗିରି ବିଷୟ ଉଲ୍ଲେଖ ହୁଏନି, ସେଇ ଖ୍ରୀଷ୍ଟ ପୂର୍ବ ଏକ ବା ଦୁଇ ଶତକ ସମୟରେ କଳିଙ୍ଗାଧିପତି 'ଭାରତବର୍ଷ' ଓ 'ଉତ୍ତରପଥ' ଦିଗ୍‌ବିଜୟ କରିଥିଲେ ଶୁଣିଲେ, ଏହି ଦୁଇଟି ଶବ୍ଦ କିପରି ଏତେ ଅତୀତକାଳରୁ ଆମର ଜାତୀୟତା ପ୍ରତିଷ୍ଠା କରିସାରିଛି ବିସ୍ମିତ ଲାଗେ । ତା' ସହିତ ତଦାନୀନ୍ତନ କଳିଙ୍ଗ ରାଇଜର ସାମରିକ ଶକ୍ତି, ସାମାଜିକତା, ଅର୍ଥ ହିସାବ, ଧର୍ମବୋଧତାର ପରିଚୟ ମିଳେ । ସମଗ୍ର ଦେଶର ନାଚ, ଗୀତ, ବାଦ୍ୟର ଯେଉଁ ବର୍ଣ୍ଣନା, ଆଉ ପଥର କାନ୍ଥରେ ସାକ୍ଷ୍ୟ ପ୍ରମାଣ ସଦୃଶ ମହାନାୟକ ଖାରବେଳ ଯେଉଁ ନୃତ୍ୟ-ନାଟିକାର ମୂର୍ଚ୍ଛନା ଗଢି ତୋଳିଛନ୍ତି, ତାହା ବିଶ୍ୱରେ ବିରଳ । ହୋଇପାରେ କଳିଙ୍ଗର ନିଜସ୍ୱ ରୀତିନୀତିର ଉନ୍ମୋଚନ, ଅଭିଲେଖ ଅବା ସାଂସ୍କୃତିକ ସ୍ମରଣିକା, ଏହା ଆମର ସ୍ୱାଭିମାନର ପ୍ରତୀକ ।

ହାତୀଗୁମ୍ଫାର କପାଳରେ ଶିଳାଲିପିକାର ପଞ୍ଚମ ଧାଡିରେ ଲିପିବଦ୍ଧ କରନ୍ତି -

ଗନ୍ଧବ ବେଦ ବୁଧୋ ଦପ ନତ ଗୀତ ବାଦିତ ସନ୍ଦସନାହି ଉସବ ସମାଜ କାରାପନାହି ଚ କୀଡାପୟତି ନଗରିଂ। .........

ଏହାର ଅନୁବାଦ ହେଉଛି -

(ତା'ପରେ ଶାସନର ତୃତୀୟ ବର୍ଷରେ) ନିଜ ଗନ୍ଧର୍ବ ବିଦ୍ୟାର କୃତି ବଳରେ କଳିଙ୍ଗ ନଗରୀରେ ଦର୍ପ-ନୃତ୍ୟ-ଗୀତ ବାଦିତ ଉତ୍ସବ ସମାଜ ତଥା କ୍ରୀଡା ପ୍ରତିଯୋଗିତା ଆୟୋଜନ କରନ୍ତି।

ଏଇ ଗୋଟିଏ ଧାଡିର ବ୍ୟାଖ୍ୟା ସେସମୟର ନାଚ, ଗୀତ ପରି ସାମାଜିକ କାର୍ଯ୍ୟକ୍ରମର ଆଭାସ ଦେବାରେ ନିଶ୍ଚିତ ସହାୟକ। ପୁଣି ଏହା ସହିତ ରାଣୀଗୁମ୍ଫା ସହ ଆଉ କେତେ ଗୁମ୍ଫାରେ ରହିଛି ନୃତ୍ୟ ଗୀତର ଶିଳାଚିତ୍ର। ଏହା କେବଳ ଶିଳ୍ପୀର କଳ୍ପନା ନୁହେଁ, ଏହା ସମସାମୟିକ ସମାଜର ବାସ୍ତବ ଚିତ୍ର।



**ଖାରବେଳ**

ବାସ୍ତବରେ ଖାରବେଳଙ୍କର କାଳ ନିର୍ଦ୍ଧାରଣ କରିବା କଷ୍ଟକର ହେଲେ ହେଁ, ଯୁକ୍ତିଯୁକ୍ତ ଭାବରେ ଏହା ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ବୋଲି ଅନୁମିତ ହୁଏ। ଏଠାରେ ଐତିହାସିକମାନଙ୍କର ଅନୁମାନ ଓ ହାତୀଗୁମ୍ଫା ଶିଳାଲିଖନର ୬-୭ ଧାଡି ରଚନାର 'ତିବସ ସତ'ରୁ ଜଣାଯାଏ, ମହାପଦ୍ମ ନନ୍ଦ (ଖ୍ରୀପୂ ୩୫୦) ଖାରବେଳଙ୍କର ପ୍ରାୟ ତିନିଶହ ବର୍ଷ ପୂର୍ବେ ତୋଷାଳିକୁ ଅଧା ନାଳ ଖୋଳିଥିଲେ। ଏହା ବ୍ୟତୀତ ସାତକର୍ଣ୍ଣୀଙ୍କ ଆନୁମାନିକ ଶାସନକାଳ (ଖ୍ରୀପୂ ୬୦-୫୦) ଓ ସୁଙ୍ଗ ଶାସନ କାଳ ହିସାବକୁ ନେଲେ, ପ୍ରାୟତଃ ଏହା ପ୍ରଥମ ଶତାବ୍ଦୀର ଶେଷଭାଗକୁ ଆସିଯାଏ। ସେହି ଦୃଷ୍ଟିରୁ ଖାରବେଳଙ୍କୁ ଜୁଲିୟସ କାଇଜରଙ୍କର ସମସାମୟିକ ବୋଲି ଅନେକ ଐତିହାସିକ ମତବ୍ୟକ୍ତ କରନ୍ତି। ତଥାପି କେତେକ ତାଙ୍କୁ ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀର ବୋଲି ମତ ଦେଇଥାଆନ୍ତି।

ଅନ୍ୟ କେତେକଙ୍କର କାଳ ନିରୂପଣ ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀକୁ ବି ଅଗ୍ରାହ୍ୟ କରାଯାଇ ନପାରେ। ଖାରବେଳଙ୍କ ଖୋଦିତ ବୃହସ୍ପତି ମିତ୍ରଙ୍କୁ ବୃହଦ୍ରଥ ମୌର୍ଯ୍ୟ ବୋଲି ଧରିଲେ, ଏହା ଦ୍ୱିତୀୟ ଶତାବ୍ଦୀ ବୋଲି ମନେକରାଯାଇପାରେ, କିନ୍ତୁ ସୁଙ୍ଗ ବଂଶର ଅଗ୍ନିମିତ୍ରଙ୍କର କୌଣସି ଦାୟାଦ ବୋଲି ମନେକଲେ, ଏହା ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀକୁ ଆସିଯାଇପାରେ। ସାତକର୍ଣ୍ଣୀ, ମଥୁରାର ଯବନ ଶାସନ ଓ କଳିଙ୍ଗର ସମାଜରେ ଶିଳାଶିଳ୍ପ, ନୃତ୍ୟଗୀତର ବିକାଶକୁ ଅନୁଧ୍ୟାନ କଲେ, ଐତିହାସିକ ନବୀନ ଚନ୍ଦ୍ର ସାହୁଙ୍କର ନିର୍ଦ୍ଧାରିତ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀ ଓ ବିଶ୍ୱ ସ୍ତରରେ ଜୁଲିୟସ୍ କାଇଜରଙ୍କର ସମସାମୟିକ ବୋଲି ମନେକରିବା ଅଧିକ ବିଶ୍ୱାସଯୋଗ୍ୟ ହୋଇପାରେ।

ଭରତ ମୁନିଙ୍କର ନାଟ୍ୟଶାସ୍ତ୍ରର ନିର୍ଦ୍ଦିଷ୍ଟ କାଳ ନିରୂପଣ କରାଯାଇ ପାରିନି। କିନ୍ତୁ ଏହି ନାଟ୍ୟଶାସ୍ତ୍ରର କଳିଙ୍ଗ (ଓଡ୍ର), ରାଣୀଗୁମ୍ଫା ଓ ଖାରବେଳଙ୍କ ପାରମ୍ପରିକ ନାଟକ ଓ ରଙ୍ଗମଞ୍ଚ ସହିତ ନିଗୂଢ ସମ୍ପର୍କ ପରିଲକ୍ଷିତ ହୁଏ। ଅନେକ ଅନୁମାନ କରନ୍ତି, ଭରତମୁନି କିମ୍ବା ତାଙ୍କର ପ୍ରତିନିଧି କଳିଙ୍ଗ ଆସି ପ୍ରତ୍ୟକ୍ଷ ଭାବରେ ଭାଷା, ଗୀତ, ନାଚ, ରାଣୀଗୁମ୍ଫା ରଙ୍ଗମଞ୍ଚ ଅନୁଧ୍ୟାନ କରି ନିଜର ମତାମତ ଦେଇଛନ୍ତି।



**(କୁମାରୀଗିରି ରାଣୀଗୁମ୍ଫାର ରଙ୍ଗମଞ୍ଚ)**

ଓଡ୍ର-ମାଗଧୀ ଭାଷା ଓ ମଧ୍ୟମ କିସମର ରାଣୀଗୁମ୍ଫା ରଙ୍ଗମଞ୍ଚ ସେମାନଙ୍କର ହୃଦୟସ୍ପର୍ଶୀ ଧାରଣାର ପରିଚୟ। କିଏ ମନେ କରିପାରନ୍ତି ଭରତମୁନି ଖାରବେଳଙ୍କୁ ନାଟ୍ୟ ଜଗତର ଜଣେ ପ୍ରତିଷ୍ଠିତ ବିଦ୍ୟାବତ୍ତା ବ୍ୟକ୍ତିତ୍ୱ ଭାବରେ କୁମାରୀଗିରି ଆସିଥିଲେ। ଇତିହାସରେ ଏହା ସମ୍ଭବ ହୋଇ ପାରି ନଥିଲେ, ଭରତମୁନିଙ୍କର ପ୍ରତିନିଧିଙ୍କର ଖାରବେଳଙ୍କର କଳିଙ୍ଗ ନାଟ୍ୟ ପରମ୍ପରାର ସ୍ରୋତରେ କୌଣସି ଉତ୍ତର ଗୋଷ୍ଠୀକୁ ନିଶ୍ଚିତ ଭାବରେ ଅନୁଧ୍ୟାନ କରିଛନ୍ତି। ଏଥିରେ ସନ୍ଦେହ ନାହିଁ।

ଏବେ ଓଡିଶାର ଧୀରେନ ଦାସଙ୍କ ଗବେଷଣାରୁ ପ୍ରମାଣ ମିଳେ କି, ନାଟ୍ୟଶାସ୍ତ୍ରରେ ଭରତମୁନିଙ୍କର ବୃହତ୍, ମଧ୍ୟମ ଓ କ୍ଷୁଦ୍ର ରଙ୍ଗମଞ୍ଚ ଭିତରୁ କୁମାରୀଗିରିର ରାଣୀଗୁମ୍ଫା ସାମନା ଅଗଣା ଗୋଟିଏ ମଧ୍ୟମ ବର୍ଗର ନାଟ୍ୟଶାସ୍ତ୍ରର ନିର୍ଭୁଲ ମାପକ। ଦୁଇଟି କାଳ-ବିବଦମାନ ଭ୍ରମରେ ଡିମ୍ବ ଆଗ କି ପକ୍ଷୀ ଆଗ ପରି ଚେତନାର ହତସ୍ତମ୍ଭ ହୁଏ। ଖାରବେଳ ପାହାଡରେ ସୀମିତ ଚଟାଣରେ ଭରତମୁନିଙ୍କର ମାପ ଅନୁସାରେ ରଙ୍ଗମଞ୍ଚ କରିବା ସମ୍ଭବ ନୁହେଁ, ବରଂ ତାଙ୍କର ପରବର୍ତ୍ତୀ କାଳରେ ମୁନି ଦେଶର ଏକ ଆଦର୍ଶ ରଙ୍ଗମଞ୍ଚ ଭାବରେ ରାଣୀଗୁମ୍ଫା ରଙ୍ଗମଞ୍ଚକୁ ମଣିଷଙ୍କ ଉଦ୍ଦେଶ୍ୟରେ ନେଇଛନ୍ତି। (ବୃହତ୍ ରଙ୍ଗମଞ୍ଚ ଦେବତାଙ୍କ ପାଇଁ ଓ କ୍ଷୁଦ୍ର ରଙ୍ଗମଞ୍ଚ ସ୍ଥାନାଭାବ ବା ସ୍ଥାନୀୟ ବ୍ୟବହାର ପାଇଁ ଉଦ୍ଦିଷ୍ଟ)।

ତେବେ ଖାରବେଳଙ୍କ ନିର୍ଣ୍ଣାୟକ ଭାବରେ ନିଶ୍ଚିତ ଭାବରେ ନାଟ୍ୟଶାସ୍ତ୍ର ନଥିଲା। ବରଂ ସେତେବେଳକୁ ଭାରତୀୟ ସଂସ୍କୃତିର ଗନ୍ଧର୍ବ ବେଦ ୩୬,୦୦୦ ଶ୍ଳୋକ ସହିତ ନାଟ୍ୟଜ୍ଞାନର ନିର୍ଝରିଣୀ ଥିଲା। ଭାରତୀୟ ସମାଜରେ ବେଦ ଓ ବେଦୋଦ୍ଭବ ଗନ୍ଧର୍ବ ବେଦର ଅନେକ ପଦ୍ଧତି ପ୍ରଚଳିତ ଥିଲା। ଏହା ସପ୍ତ ସ୍ୱରର ପର୍ଯ୍ୟାଲୋଚନା କରେ, ବୀଣା ବାଦନର କଳା ବର୍ଣ୍ଣନା କରେ ପୁଣି ରାଗର ସୂକ୍ଷ୍ମ ପଦ୍ଧତି ଓ ସମାହାର ବାଟ ବତାଏ, ତାଳ ଓ ଗୀତିର ସମନ୍ୱୟ ରଖେ ତଥା ଗୀତିକାର ଓ ନାଟ୍ୟକାରଙ୍କର ମେଳ ରଖିବାର ସୂତ୍ର ବତାଏ। ଆଜି ସିନା ଗନ୍ଧର୍ବ ବେଦ ନିଶ୍ଚିହ୍ନ ହୋଇଯାଇଛି, ଏହା ନାଟ୍ୟଶାସ୍ତ୍ର ସଂକଳନ ବେଳକୁ ତଥା ତା' ପୂର୍ବରୁ ସମାଜରେ ପ୍ରଚଳିତ ଥିଲା ଓ ଖାରବେଳଙ୍କ ସମୟ ତ ନାଟ୍ୟଶାସ୍ତ୍ର ପୂର୍ବର ବୋଲି ଆକଳିତ । ତେଣୁ ଖାରବେଳ ଗନ୍ଧର୍ବ ବେଦ, ତୌର୍ଯ୍ୟତିକ ତଥା ଷୋଳକଳା ବିଷୟ ଉଲ୍ଲେଖ କରିବା ସମୀଚୀନ ମନେହୁଏ। ଭାରତ ଇତିହାସରେ ଖାରବେଳ ପ୍ରଥମ ସମ୍ରାଟ ଯିଏ ଗନ୍ଧର୍ବ ବେଦର ବିଶାରଦ ହୋଇପାରିଥିଲେ। ତାଙ୍କ ବହୁ ପର ଶତାବ୍ଦୀଗୁଡିକରେ କେତେଜଣ ସମ୍ରାଟ ଗନ୍ଧର୍ବ ବେଦରେ ପଶି ପାରିଥିଲେ।

ଗନ୍ଧର୍ବ ଶବ୍ଦରୁ ଗନ୍ଧର୍ବ ବିଦ୍ୟା ସଂଗଠିତ। ଗନ୍ଧର୍ବମାନେ ସ୍ୱର୍ଗୀୟ, ଦେବତାମାନଙ୍କର ସଭାର ଗାୟକ, ନୃତ୍ୟଗୀତର ଆଦର୍ଶ ଅଟନ୍ତି। କଳ୍ପନାରେ ସେମାନେ ସମ୍ପୂର୍ଣ୍ଣ ମାନବିକ ଅବା ଅର୍ଦ୍ଧ ମାନବିକ ଶରୀର ଧାରଣ କରନ୍ତି। କେତେବେଳେ ଅନ୍ୟ ପ୍ରାଣୀର ଶରୀର, ଅଶ୍ୱ ଶରୀର ବା ପକ୍ଷୀ ରୂପ ଧାରଣ କରିପାରନ୍ତି। ଗନ୍ଧର୍ବ ଉଡିପାରେ, କଳ୍ପନାତୀତ ଭାବରେ ରୂପ ପରିବର୍ତ୍ତନ କରିପାରେ। ଗନ୍ଧର୍ବ ରମଣୀ ହିଁ ଅନନ୍ୟ ସୁନ୍ଦରୀ

ଅପ୍‌ସରା। ସେହି ଗନ୍ଧର୍ବମାନେ ଦେବତାମାନଙ୍କର ସୂତ୍ରଧର ହୋଇ କାର୍ଯ୍ୟ ନିର୍ବାହ କରନ୍ତି। ଗନ୍ଧର୍ବ ବି ଦେବତା ଅବା ଇନ୍ଦ୍ରଙ୍କ କଥା ରକ୍ଷା କରିବାକୁ ଯାଇ ଘନ ଜଙ୍ଗଲରେ ତପମଗ୍ନ ଋଷିଙ୍କର ଧ୍ୟାନ ଭଙ୍ଗ କରିବାର ବହୁ ପୌରାଣିକ ଉପାଖ୍ୟାନ ରହିଛି।

କିନ୍ତୁ ଗନ୍ଧର୍ବ ସର୍ବଦା ଉଚ୍ଚକୋଟୀର ସଙ୍ଗୀତ, ନାଟକ ଓ ଅଭିନୟର ନିଦର୍ଶନ। ସେମାନଙ୍କର ସବୁ ରୂପରେ ରହିଛି ଚମତ୍କାର ସଂଗୀତ ପରିବେଷଣ ଶୈଳୀ, ଅକଳ୍ପନୀୟ ନାଚ ଓ ଅଭିନୟ ପ୍ରଦର୍ଶନ କ୍ଷମତା। ହିନ୍ଦୁ ବିବାହ ବନ୍ଧନ ପରି କଠିନ ନିୟମ ନାଚ ଗୀତ ବିଶେଷଜ୍ଞ ଗନ୍ଧର୍ବମାନଙ୍କ କ୍ଷେତ୍ରରେ ସରଳ ହୋଇ ଗାନ୍ଧର୍ବ ମତର ବିବାହ ହୋଇଛି। ଏହା ବି ସାଧାରଣ ସମାଜରେ ପ୍ରଯୁଜ୍ୟ ନ ହେଲେ ବି ଶାସ୍ତ୍ର ପୁରାଣରେ ରାଜା କି ରାଜପୁତ୍ରମାନଙ୍କ କ୍ଷେତ୍ରରେ ବିରଳ ନୁହେଁ।

ଗନ୍ଧର୍ବ ବେଦ ସର୍ବ ପୁରାତନ ଋକ୍ ବେଦର ଧାରାରେ ସଂଗଠିତ ଓ ଏହା ସମାହାର, ସମିଶ୍ରଣ ଓ ସମନ୍ୱୟର ତତ୍ତ୍ୱରେ ରଚିତ। ନିଜ ଚେତନାରେ ସୃଷ୍ଟିର ନିୟାମକକୁ ସୂତ୍ର ଧରି ଏହା ଋଷି ମନରେ ନବ ମାନବିକ ଚେତନା ଗଢି ତୋଳେ। ଅନ୍ୱେଷୀ ମନରେ ସଂହିତାର ମାନସିକ ଶକ୍ତି ଜାଗରଣ କରେ। ଆତ୍ମ ସନ୍ତୋଷ, ଆତ୍ମସମୀକ୍ଷା ଓ ଆତ୍ମ ପ୍ରାଚୁର୍ଯ୍ୟ ଚେତନାରେ ମନ ଭରିଦିଏ।

ଶରୀର ଓ ବେଦ ନିର୍ଜୀବ ନୁହେଁ। ତା' ମଧ୍ୟରେ ଗନ୍ଧର୍ବ ବେଦ ଚଳଚଞ୍ଚଳ ସଂହିତା। ମନ ଓ ଶରୀରକୁ ପୁଲକିତ କରିବାର ବିଦ୍ୟାର କୋଷ। ଏହା ଜୀବନ ପ୍ରକ୍ରିୟାର ସୁଖଦୁଃଖର ସଂଜ୍ଞା ଗଠନ କରେ। ଶରୀର, ହୃଦୟ, ସ୍ନାୟୁ ଓ ସୁଷମ୍ନାକାଣ୍ଡର ସଂଚାରଶକ୍ତିର ସନ୍ତୁଳନ ରକ୍ଷା କରେ। ଏହା ସାତୋଟି ସ୍ୱରକୁ ସମତାଳ ରଖେ – ସା–ରେ–ଗା–ମା–ପା–ଧା–ନି–ସା। ତା' ମଧ୍ୟରୁ ଚାରିଗୋଟି ସ୍ୱର ଯଥା – ରେ–ଗା–ଧା–ନି – ହୃଦୟର ସ୍ୱାୟତ୍ତ ସ୍ନାୟୁ ଓ – ମା – ସ୍ୱର ମସ୍ତିଷ୍କ ସ୍ନାୟୁ ଉପରେ ଗୁରୁ ପ୍ରଭାବ ପକାଇ ପାରେ।

ଗନ୍ଧର୍ବ ବେଦ ଶରୀର ତତ୍ତ୍ୱରେ ଚେତନାର ସମନ୍ୱୟ ସୃଷ୍ଟି କରି ଋଷି ସୁଲଭ ଗୁଣର ଆହ୍ୱାନ କରିଥାଏ। ଶରୀରର ନିତ୍ୟ ପରିବର୍ତ୍ତନଶୀଳ ବିପାଚନ ପ୍ରକ୍ରିୟାକୁ ପ୍ରାକୃତିକ ଶକ୍ତିରେ ମନ୍ତ୍ରମୁଗ୍ଧ କରେ। ଶରୀର ଅଭ୍ୟନ୍ତରର ହୃତ ସ୍ପନ୍ଦନ, ମସ୍ତିଷ୍କର ଅହୋରାତ୍ର ଲୟ ଓ ତାନ, ଅନ୍ତସ୍ରାବୀ କ୍ଷରଣ, ଜୀବକୋଷ ସ୍ତରରେ ଖାଦ୍ୟ ଓ ବାୟୁର ସମୀକୃତ ବିପାଚନ ଆଦି ଦୈବୀ ପଦ୍ଧତିର ଅଦୃଷ୍ଟରେ ବିନିଯୋଗ କରିଥାଏ।

ହାତୀଗୁମ୍ଫାର ୧୬ (ଷୋଡଦଶ) ଧାଡିରେ ଲେଖାଯାଇଛି –

୧୬ – ....ମୁରିୟ କାଳ ଭୋଚିନାମ୍ଂ ଚ ଚୋୟଥି ଅଂଗ ସନ୍ତିକଂ ତୁରିୟ ଉପାଦୟତି।....

(ଚଉଷଠି କଳାର ଅନ୍ତର୍ଭୁକ୍ତ ତୌର୍ଯ୍ୟାତିକ ପଦ୍ଧତି ଯାହାକି ମୌର୍ଯ୍ୟ ଅମଳରୁ ସ୍ଥଗିତ ରହିଥିଲା, ତାହାର ପୁନରୁଦ୍ଧାର କରନ୍ତି।)

ଉପରୋକ୍ତ ଶିଳାଲିଖନରୁ ପ୍ରତୀୟମାନ ହୁଏ ଯେ, ଗନ୍ଧର୍ବ ବିଦ୍ୟାଗତ ଚଉଷଠି କଳା ମୌର୍ଯ୍ୟଶାସନ ପୂର୍ବରୁ କଳିଙ୍ଗରେ ପ୍ରଚଳିତ ଥିଲା। କଳିଙ୍ଗବାସୀ ଏକ ସଙ୍ଗେ ନାଚ–ଗାଉଣା–ବାଜଣା ବିଧି ବ୍ୟବହାର କରି ସମାଜ ଓ ଉତ୍ସବ ପାଳନ କରୁଥିଲେ। କଳିଙ୍ଗର ନଗର ତଥା ପ୍ରତିଷ୍ଠିତ ଗ୍ରାମଗୁଡିକରେ ଏମିତି ସାମାଜିକ ଚଳଣି ଲୋକପ୍ରିୟ ଥିଲା। ଧର୍ମ ବା ସାମାଜିକ ଉତ୍ସବଗୁଡିକରେ ଲୋକେ ମନ ଖୁସିରେ ନାଚ ତାମସା କରି ସମୟ ବିତାଉ ଥିଲେ। ଏଥିପାଇଁ କୌଣସି ରାଜକୀୟ ପ୍ରତିବନ୍ଧକ ନଥିଲା। ପ୍ରଚଳିତ ଥିବା କଳିଙ୍ଗର ଜୈନ ଧର୍ମ କୌଣସି ମତେ କଳିଙ୍ଗ ସଂସ୍କୃତି ପାଇଁ ପରିପନ୍ଥୀ ନଥିଲା।

କିନ୍ତୁ ଚଣ୍ଡାଶୋକ ଏହି ତୋଷାଳି ଉପକୂଳରେ କଳିଙ୍ଗ ଯୁଦ୍ଧ ସମାପ୍ତ ହେବା ପରେ ବୌଦ୍ଧଧର୍ମ ଗ୍ରହଣ କରିବାର ବର୍ଣ୍ଣନା ରହିଛି। ଏହା ପୂର୍ବରୁ ଦୁଇବର୍ଷ ହେବ ସିଏ ବୌଦ୍ଧଧର୍ମପ୍ରତି ଆକର୍ଷିତ ହେବାର ଅବା ଦୀକ୍ଷିତ ହେବାର ବି ପ୍ରମାଣ ରହିଛି। ଯାହା ହେଉ, ବୌଦ୍ଧଧର୍ମ ଅବଲମ୍ବନ କଲାପରେ ବୁଦ୍ଧଙ୍କ ପ୍ରତି ଓ ବୌଦ୍ଧଧର୍ମ ପ୍ରତି ଅତି ମାତ୍ରାରେ ଆଗ୍ରହ ପ୍ରକାଶ କଲେ। ଅଶୋକ ବର୍ଦ୍ଧନ ମୌର୍ଯ୍ୟଙ୍କ ଧାରଣାରେ ଦେଶରେ ଲୋକମାନେ ସମାଜ ଓ ଉତ୍ସବ କରି ସମୟ ନଷ୍ଟ କରୁଛନ୍ତି ଓ ବୁଦ୍ଧଙ୍କୁ ମନରେ ସ୍ମରଣ କରିବାର ସମୟ ହ୍ରାସ ହେଉଛି। ଏହାର ରାଜକୀୟ ବିଧାନ ସଦୃଶ ସାରା ମୌର୍ଯ୍ୟ ଶାସନାଧୀନ ଅଞ୍ଚଳରେ ସମାଜ,

ଉତ୍ସବ, ବାସନ୍ଦ କଲେ। ଫଳସ୍ୱରୂପ କଳିଙ୍ଗରେ ପ୍ରଚଳିତ ତୌର୍ଯ୍ୟତିକ ପଦ୍ଧତି ବି ବହୁ ବର୍ଷ ବେଳକୁ ଲୁପ୍ତ ହେବାକୁ ବସିଥିଲା।

ଅନେକ ଐତିହାସିକ ଅଶୋକବର୍ଦ୍ଧନ ମୌର୍ଯ୍ୟଙ୍କର ଧର୍ମବିକାର ବି ବର୍ଣ୍ଣନା କରନ୍ତି। ସେ ନିଜେ ଜୈନ ଧର୍ମର କ୍ଷତି କରିବାର ବର୍ଣ୍ଣନା ରହିଛି। କଳିଙ୍ଗର ମୃତାହତଙ୍କ ପାଇଁ ଅବା ବନ୍ଦୀ କରିଥିବା କଳିଙ୍ଗବାସୀମାନଙ୍କ ପାଇଁ କିଛି କରିଥିବାର ପ୍ରମାଣ ଦେଇ ନାହାନ୍ତି। କିନ୍ତୁ ଶାସନର ଶକ୍ତ ନିର୍ଦ୍ଦେଶ ରହିଛି, କଳିଙ୍ଗକୁ ପ୍ରମୁଖ ରାଜ୍ୟ ଭାବରେ ମୌର୍ଯ୍ୟଶାସନ ବଳବତ୍ତର ହୋଇଛି। ଅଣ–ବୌଦ୍ଧମାନଙ୍କ ପାଇଁ ସମାଜ–ଉତ୍ସବ ବାସନ୍ଦ କରି ଧର୍ମ ଅସହିଷ୍ଣୁତାର ପ୍ରମାଣ ଦେଇଛନ୍ତି। ଅନ୍ତତଃ ତାଙ୍କର ଦୀର୍ଘ ଶାସନ କାଳରେ ସମାଜରେ ଆଦୃତ ଏପରି ଲୋକପ୍ରିୟ ସଂସ୍କୃତି ଥରେ ଲୋପ ପାଇଗଲେ, ଏହାର ପୁନରୁଦ୍ଧାର ସହଜସାଧ୍ୟ ନୁହେଁ।

ଏମିତି କଳିଙ୍ଗରୁ ଲୋପ ପାଇଛି ତୌର୍ଯ୍ୟତିକ, ଗନ୍ଧର୍ବ ବିଦ୍ୟା ରାଜକୀୟ ପ୍ରୋତ୍ସାହନରେ ପ୍ରସାର ଲାଭ କରିବାର କଳା। ବିରୋଧାଭାଷରେ ଏହାର ଅସ୍ତିତ୍ୱ ଲୋପ ପାଇଯିବା ନିଶ୍ଚିତ। ମୌର୍ଯ୍ୟ ଶାସନ କେତେ କାଳ ପରେ ସୁଙ୍ଗ ଶାସନ ହେଲେ ବି କଳିଙ୍ଗ ଧୀରେ ଧୀରେ ସ୍ୱାଧୀନ ହୋଇଗଲା। ଲୋପ ପାଇ ଯାଉଥିବା ଏହି ଗାନ୍ଧର୍ବ କଳାର ପୁନରୁଦ୍ଧାର ଚରମ ସୀମାରେ ପହଞ୍ଚିଛି କଳିଙ୍ଗାଧିପତି ଖାରବେଳଙ୍କ ଶାସନରେ। ସମ୍ଭବତଃ କଳିଙ୍ଗର ଅଭ୍ୟନ୍ତର ମୌର୍ଯ୍ୟଶାସନର ବାସନ୍ଦ ପ୍ରକ୍ରିୟାକୁ ଏତେ ସହଜରେ ଗ୍ରହଣ କରି ନେଇ ନଥିବ, କେବଳ ମୌର୍ଯ୍ୟ ଅଧୀନ କଳିଙ୍ଗ ପ୍ରଶାସନର ବାରଣ ଓ ବିନା ପ୍ରୋତ୍ସାହନରେ ସମାଜ ଓ ଉତ୍ସବ ଯେତିକି ଲୁଚାଛପା ଥିବ, ଗନ୍ଧର୍ବ ବିଦ୍ୟାର ଆଦର ସେତିକି ହ୍ରାସ ଘଟିଥିବ ଅଶୋକ–ଖାରବେଳ ସମୟସୀମା ଦୁଇ ଶତାବ୍ଦୀ ଅନ୍ତରରେ।

ପୁଣି ଖାରବେଳଙ୍କ ତିନି ପୁରୁଷର ପୂର୍ବଜଙ୍କ ଅମଳରୁ କଳିଙ୍ଗ ନିଶ୍ଚିତ ଆଦରି ନେଇଛି ପୂର୍ବ ସଂସ୍କୃତିର ଗନ୍ଧର୍ବ ବେଦ ଆଧାରିତ ନାଚ ତାମସା, ତୌର୍ଯ୍ୟତିକ, ଗନ୍ଧର୍ବ ବେଦର ଚଉଷଠି କଳାର ପ୍ରଶିକ୍ଷଣ ଓ ଧନଧାନ୍ୟରେ ପରିପୂର୍ଣ୍ଣ କଳିଙ୍ଗ ରାଷ୍ଟ୍ରରେ ବାଦ୍ୟ, ଗୀତ, ନାଚ ଓ ମନମୋହକ ସାମାଜିକ ଉତ୍ସବ।

କିନ୍ତୁ ଖାରବେଳଙ୍କ ଶାସନ କାଳରେ ଏହା ଉତ୍କର୍ଷ ଲାଭ କରିଛି। କାରଣ ନିଜେ ଖାରବେଳ ବାଲ୍ୟକାଳରୁ କଳାପ୍ରେମୀ। ସିଏ ନିଜେ ବାଲ୍ୟକାଳ ଓ ଯୁବରାଜ ବେଳରୁ ଏସବୁ କଳାରେ ପାରଙ୍ଗମ। ବୋଧହୁଏ ଦେଶର ବିଶିଷ୍ଟ ଗାନ୍ଧର୍ବ ବିଦ୍ୟାର ଶିକ୍ଷକମାନେ ତାଙ୍କର କଳାଗୁରୁ ଭାବରେ ପିତା ବୃଦ୍ଧରାଜ ନିଯୁକ୍ତ କରିଥିଲେ। ଏମିତି ରାଜ ପ୍ରୋତ୍ସାହନ ରାଜ୍ୟରେ ଆଲୋଡନ ସୃଷ୍ଟି କରି କଳିଙ୍ଗ ମୁଖରିତ ହେଲା ବାଦ୍ୟର ତାଳେ ତାଳେ ଗୀତ ଓ ଗୀତି ନାଚରେ। ଅଭିନୟ ଓ ଚଉଷଠି କଳାର ସମ୍ପୂର୍ଣ୍ଣ ପ୍ରୟୋଗ ହେଲା କଳିଙ୍ଗରେ।

ଗନ୍ଧର୍ବ ବେଦର ଚଉଷଠି କଳା ବିଷୟ ସବୁଠାରେ ଉଲ୍ଲିଖିତ। ଖ୍ରୀଷ୍ଟ ଜନ୍ମ ପୂର୍ବରୁ ଗନ୍ଧର୍ବ ବେଦର ଏହି କଳାଗୁଡିକ କଅଣ ଥିଲା, ସେ ବିଷୟରେ ଖାରବେଳ ବୁଦ୍ଧ ବା ବିଶାରଦ ବୋଲି ଯାହା ହାତୀଗୁମ୍ଫା ଶିଳାଲିଖନରେ ଦର୍ଶାଯାଇଛି, ତାହାର ସମ୍ୟକ୍ ଧାରଣା ରହିବା ଆବଶ୍ୟକ। ସହି ସମୟର ସମାଜ, ନାଟକ, ନାଟ୍ୟମଞ୍ଚର ସାଜସଜ୍ଜା, ନାଟ୍ୟକାରମାନଙ୍କର ସର୍ବଗୁଣ ସମ୍ପନ୍ନତା ବିଷୟରେ ଆଲୋକପାତ ହେବା ଆବଶ୍ୟକ। ଯେଉଁ ଚଉଷଠି କଳାରେ ନିଜେ ଖାରବେଳ ନିପୁଣ ତା' ବିଷୟରେ ସମ୍ୟକ୍ ଜ୍ଞାନ ଆବଶ୍ୟକ।

ଏହି ଚଉଷଠି କଳା ମୁଖ୍ୟତଃ ଗୀତ, ବାଦ୍ୟ, ନୃତ୍ୟ ଓ ରଙ୍ଗମଞ୍ଚରେ ସାଜସଜ୍ଜା ସହିତ କଳାକାରଙ୍କ ଜ୍ଞାନ ପରିସର ଓ ବ୍ୟବହାରରେ ମାନସିକତା ନିର୍ଭର କରେ। ଗୀତ ଗାଇବା, ବାଜା ବଜାଇବାରେ ପାରଙ୍ଗମ ହେବା, ନାଚ କରିବା ତଥା ଅଭିନୟ ସଂଗଠନ କରିବା, ଦେଖିବା, ଶୁଣିବା ସାଂସ୍କୃତିକ କଳା ହେଲେ ବି ଅଭିନୟରେ ରଙ୍ଗ ପ୍ରସାଧନ ଦେଇ ସଜାଇବା, ମୁହଁ ଓ ଦେହକୁ ବିଭିନ୍ନ ରଙ୍ଗରେ ରଞ୍ଜିତ କରିବା ଅଭିନୟ ମଞ୍ଚର ବିଶିଷ୍ଟ ଦକ୍ଷତା। ଚାଉଳ ଓ ଫୁଲର ମିଶ୍ରଣ କରି ଅର୍ପଣ ପାଇଁ ପ୍ରସ୍ତୁତ କରିବା, ଶଯ୍ୟାକୁ ସୁନ୍ଦର ଭାବରେ ଫୁଲରେ ସଜାଇବା, ପ୍ରସାଧନ ଦ୍ରବ୍ୟରେ ଦାନ୍ତ, ବସ୍ତ୍ର ଓ ଶରୀରକୁ ସୁନ୍ଦର ଭାବରେ ରଞ୍ଜିତ କରିବା, ରଙ୍ଗମଞ୍ଚର ଭୂମିସଜ୍ଜା, ଶଯ୍ୟା ଆବରଣ,

ଜଳତରଙ୍ଗ ବାଦ୍ୟ ଓ ଜଳ କଳସୀ ସ୍ଥାପନ, ରଙ୍ଗ ମିଶ୍ରଣର ଚାତୁରୀ ଅଭିନୟ ମଞ୍ଚର ପ୍ରାଥମିକ ଆବଶ୍ୟକତା। ପୁନଶ୍ଚ ପୁଷ୍ପହାର ପ୍ରସ୍ତୁତି, ମଥାରେ ମୁକୁଟ ସଜ୍ଜା, ନେପଥ୍ୟେ ସାଜସଜ୍ଜା, କାନର କୁଣ୍ଡଳ ବା ଅଳଙ୍କାର ସଜ୍ଜା, ଶରୀରକୁ ସୁବଳିତ କରିବା, ଅଳଙ୍କାରରେ ଭୂଷିତ କରିବା, ହାତର ଅନେକ ଭଙ୍ଗୀ ପ୍ରଦର୍ଶନ ରଙ୍ଗମଞ୍ଚର ପ୍ରତ୍ୟୁତ୍ପନ୍ନମତିତାର ପ୍ରମାଣ ଦିଏ।

ଏତଦ୍‌ବ୍ୟତୀତ ସୁମିଷ୍ଟ ଖାଦ୍ୟ ପ୍ରସାଧନ, ପାନୀୟ ମିଶ୍ରଣ ଓ ଇଷତ୍ ଲାଲ୍ ପାନୀୟର ପ୍ରସ୍ତୁତି ଓ ସେବନ, ଛୁଞ୍ଚି ସୂତା ସିଲେଇ, ସୂତାର ଖେଳ, ବୀଣା ଓ ଢୋଲ ବାଦନ, କ୍ଲିଷ୍ଟ ଅବୋଧ୍ୟ ଭାଷା କହିବାର ଅଭ୍ୟାସ, ପୁସ୍ତକର ପାଠ ଉଚ୍ଚାରଣ, ଏକାଙ୍କିକା ପରିଚାଳନା ଶକ୍ତି, କାବ୍ୟ ସମସ୍ୟା ଉତ୍‌ଥାପନ ଓ ତା'ର ସମାଧାନ, ଧନୁଶର ଓ ତୂଣୀର ପ୍ରସ୍ତୁତି, ତକଲିରେ ସୂତା କାଟିବା, ବଢେଇ କାମ, ଯାନ୍ତ୍ରିକ ଜ୍ଞାନ, ରୂପା ଓ ମୂଲ୍ୟବାନ ଧାତୁ ଓ ପଥର ପରୀକ୍ଷା, ଧାତୁ ବିଦ୍ୟା, ମଣିରାଗ ଜ୍ଞାନ ଆଦିର ନିଶ୍ଚିତ ଆବଶ୍ୟକତା ରହିଛି ଅଭିନୟ କରିବାରେ ଓ ମଞ୍ଚ ପରିଚାଳନାରେ।

ପୁଣି ସାମାଜରେ ମାନ୍ୟତା ଦୃଷ୍ଟିରୁ ଔଷଧୀୟ ଗୁଣ ଓ ଉଦ୍ଭିଦଜାତ ଔଷଧ ଜ୍ଞାନ, ମନୋରଞ୍ଜନ ସୂଚକ ପକ୍ଷୀ, ଗଞ୍ଜା ବା ବୋଦା ଲଢେଇ ଆଦି ବିଷୟରେ ସଂପୃକ୍ତି, ଶୁଆ ସାରୀ କଥୋପକଥନରେ ଅଂଶଗ୍ରହଣ, ସୁବାସିତ ପଦାର୍ଥରେ ଅର୍ଚ୍ଚନା, ମୁଣ୍ଡର କେଶସଜ୍ଜା, ଅଙ୍ଗୁଳି ଠାରରେ ବାର୍ତ୍ତା ଆଭାସ ଓ ସଂକେତ, ଦେଶ ବିଦେଶ ଭାଷାଜ୍ଞାନ, ସ୍ୱର୍ଗୀୟ ଶବ୍ଦର ଅର୍ଥ ନିରୂପଣ, ବର୍ବର ଭାବରେ ଅଭିନୟ, ବାର୍ତ୍ତାଳାପ, ମାନସିକ ପଦ ସଂଯୋଜନା, କୌଣସି ସାହିତ୍ୟ ବା ଚିକିତ୍ସାର ପରିକଳ୍ପନା, ନିଜକୁ ଗୋଟିଏ ଚୈତ୍ୟର ନିର୍ମାତା ଭାବରେ ଅଭିନୟ, ଅଭିଧାନ ଓ କୋଷ ଛନ୍ଦ ଜ୍ଞାନ, ବସ୍ତ୍ର ଗୋପନ, ଦ୍ୟୁତକ୍ରୀଡା, ପଶା ଖେଳ, ଚୁମ୍ବକୀୟ ଜ୍ଞାନ ଓ ଖେଳ, ଜୟଲାଭ ବିଦ୍ୟା, ବିଭିନ୍ନ ଅତି ମାନବିକ ଚାତୁରୀ ପ୍ରଦର୍ଶନ ବିଷୟ ଏହି ଚଉଷଠି କଳାର ଅଂଶ ବିଶେଷ।

ଖାରବେଳଙ୍କର ସ୍ୱଳ୍ପ ଅବଧିର କଳିଙ୍ଗ ଶାସନରେ ବାର ବର୍ଷରେ ଛଅରୁ ଊର୍ଦ୍ଧ୍ୱ ରାଜ୍ୟର ପଶ୍ଚିମ, ଉତ୍ତର ଓ ଦକ୍ଷିଣ ଦିଗକୁ ଦିଗ୍‌ବିଜୟ ତାଙ୍କ ଜୀବନକୁ ଏମିତି ବ୍ୟସ୍ତ ରଖିଥିବ, ସିଏ ଗନ୍ଧର୍ବ ବେଦର ଚଉଷଠି କଳା ପ୍ରୟୋଗ କରିବାକୁ ଅବକାଶ ବା ମାନସିକତା ପାଇବେ କେଉଁଠୁ ? ସେଥିପାଇଁ କେହି ପ୍ରତ୍ନତତ୍ତ୍ୱବିତ୍ ଅବା ଐତିହାସିକ ସରଳରେ ବ୍ୟାଖ୍ୟା କରନ୍ତି କି, ଉଦୟଗିରିର ହାତୀଗୁମ୍ଫାରେ ନିଜ ବଡିମା ଦେଖାଇ ଅତିରଞ୍ଜିତ କରି ଦର୍ଶାଯାଇଛି। ଓଡିଆ ଜାତିର ପାଠକମାନେ ଏହି ପ୍ରକାର ବ୍ୟାଖ୍ୟାକୁ ଅତି ସରଳ ଓ କଦର୍ଥପୂର୍ଣ୍ଣ ବୋଲି ମନେକରନ୍ତି। କାରଣ ଏହି ହାତୀଗୁମ୍ଫା ମଥାର ଅତି ପୁରାତନ ଶିଳାଲିଖନ ସମୟ, ଭୂଗୋଳ, ଇତିହାସ, ଶାସନ, ଲୋକମାନଙ୍କର ସାମାଜିକତା, ସଂସ୍କୃତି, ଅଳଙ୍କାର ଆଦିର ବର୍ଣ୍ଣନା ସହିତ ଅନେକ ଅର୍ଥପୂର୍ଣ୍ଣ ଶିଳାଖୋଦିତ ଚିତ୍ର ରାଣୀଗୁମ୍ଫା, ଗଣେଶ ଗୁମ୍ଫା, ମଞ୍ଚପୁରୀ ଗୁମ୍ଫା ଆଦିରେ ରଚିଛନ୍ତି। ଏହା ସେଇ ଅନ୍ଧକାର ଇତିହାସର ଅନେକ ତଥ୍ୟ ଆଲୋକକୁ ଆଣେ, ଏହି ଲିଖିତ ମର୍ମରେ ଯଦି ଭାରତର ଇତିହାସ ସମୃଦ୍ଧ ହୋଇଥାଆନ୍ତା, ତେବେ କଳିଙ୍ଗ ତଥା ଓଡିଶାର ଐତିହାସିକ ମର୍ଯ୍ୟାଦା ବିଶ୍ୱ ଇତିହାସରେ କେତେ ଉପରେ ଥାଆନ୍ତା, ଏହା ଏକ ଶୋଚନାର ବିଷୟ। ଖ୍ରୀଷ୍ଟପୂର୍ବ ଏକ ଶତାବ୍ଦୀର ରଚିତ ଇତିହାସ ନନ୍ଦ ଓ ମୌର୍ଯ୍ୟ ଶାସନର କାଳ ନିରୂପଣ କରେ, ନାଟ୍ୟଶାସ୍ତ୍ରର ବିବର୍ତ୍ତନ ସିଦ୍ଧ କରେ। କିନ୍ତୁ ବିଶ୍ୱ ଇତିହାସରେ ଖାରବେଳଙ୍କର କୃତିର ସ୍ୱୀକୃତି ମିଳେନି। ଭାରତ ଇତିହାସ ଅଶୋକ ଓ ବୌଦ୍ଧ ପଥରେ ଆଲୋକିତ, ଶିଳାଲିଖନ ସତ୍ତ୍ୱେ କଳିଙ୍ଗକୁ ଅନ୍ଧକାରରେ ରହିଛି।

ଗବେଷକମାନେ ଅନେକ ତଥ୍ୟର ସନ୍ଧାନ ପାଆନ୍ତି ତଥା ସ୍ଥାନୀୟ ଲୋକମାନଙ୍କର ବହୁ ପୁରୁଷର ଲୋକକଥା ଓ ବିଶ୍ୱାସ ଖାରବେଳଙ୍କର ଭାଷା, ନାଚ ଗୀତକୁ ବ୍ୟକ୍ତିଗତ ଭାବେ ଅନ୍ତରର ସହିତ ଆଦର କରୁଥିବାର କାରଣରୁ ରାଜକାର୍ଯ୍ୟ ସାରି କୁମାରୀଗିରିରେ ମନୋରଞ୍ଜନ କରୁଥିଲେ, ପରିଶେଷରେ ରାଜ୍ୟ ଶାସନ ହସ୍ତାନ୍ତର କରି ଏଠାରେ ସାଧକ ତଥା ତାପସ ଜୀବନ ବିତାଇବାର ନିଷ୍ପତ୍ତି ନେଲେ। ରାଣୀ ଗୁମ୍ଫା କୁମାରୀଗିରିର ଗୋଟିଏ ବିସ୍ମୟ। ଏହା ତାଙ୍କର ପତ୍ନୀ ସିନ୍ଧୁଳାଙ୍କ ସର୍ବଧର୍ମ ଆଦୃତ




ଦେଶ ଦଶର ପର୍ଯ୍ୟଟକଙ୍କ ପାଇଁ ଶାସନର ଶେଷ ବର୍ଷଗୁଡିକରେ ଖାରବେଳ ନିର୍ମାଣ କରିଥିଲେ ବି ଏହାର ନାଟ୍ୟ–ରଙ୍ଗମଞ୍ଚ ପରିମାପ ପ୍ରଣିଧାନଯୋଗ୍ୟ। ଏହା ବି ତଦାନୀନ୍ତନ ଭାରତରେ କାହିଁକି ବିଶ୍ୱରେ ଏକ ଆକର୍ଷଣୀୟ କ୍ଷେତ୍ର ହୋଇଥିବା ସମ୍ଭବ। ରାଣୀଗୁମ୍ଫାର ରଙ୍ଗମଞ୍ଚ ମାନ୍ୟତା ୧୯୭୭ ମସିହାରେ ପ୍ରମାଣ କରିଛନ୍ତି, ଧୀରେନ୍ଦ୍ର ଦାଶ, ତାଙ୍କ ପ୍ରମାଣିତ ନକ୍ସା ଖାରବେଳଙ୍କର ନାଟ୍ୟପ୍ରେମର ଗୋଟିଏ ପ୍ରତ୍ନତାତ୍ତ୍ୱିକ ପ୍ରମାଣ।

ଖାରବେଳ ନିଜକୁ ବଂଶବର୍ଦ୍ଧନ ବୋଲି ନାମିତ କରିଛନ୍ତି, ନିଜର ଗନ୍ଧର୍ବ ବିଦ୍ୟାର ସାଧନାରେ ବୁଦ୍ଧ ବୋଲି ବର୍ଣ୍ଣନା କରିଛନ୍ତି।





ଅଭିଜ୍ଞତା ଓ ଉଚ୍ଚାଭିଳାଷ ସାର୍ଥକ କରିପାରିଛନ୍ତି ସ୍ୱ ଇଚ୍ଛା ବଳରେ। କାରଣ ସେଇ ନଅ ବର୍ଷର ଯୁବରାଜ ଅବଧି କଟିଛି ପିତାଙ୍କର ଅନୁପସ୍ଥିତିରେ।

ଏଠାରେ ଅନୁମାନସାଧ୍ୟ, ତାଙ୍କର ଅଧ୍ୟବସାୟ ସହିତ ନିଜର ପ୍ରଶାସନକୁ ଲୋକାଭିମୁଖୀ କରିଥିଲେ। ସବୁ ବିଭାଗର କାର୍ଯ୍ୟ ସୁଚିନ୍ତିତ ଭାବରେ ମାନବିକ ଗୁଣ ଓ ପ୍ରାକୃତିକ ନ୍ୟାୟରେ ସମ୍ପାଦନ କରୁଥିଲେ। ନିଜର ରାଜ୍ୟ ଶାସନ ବୃତ୍ତିଠାରୁ ନିଜର ପ୍ରକୃତିଦତ୍ତ ପ୍ରବୃତ୍ତି ବଳି ପଡିଥିଲା। ଏଇଟା ବି ଗୋଟିଏ କାରଣ ହୋଇପାରେ ଏତେବଡ କୃତକାର୍ଯ୍ୟ ସମ୍ରାଟ ଦେଶର ଶକ୍ତି ସଙ୍କୋଚନ ସମୟରେ କାହିଁକି ସନ୍ନ୍ୟାସ ନେଲେ। ସମ୍ଭବତଃ ନିଜେ ବଳିଷ୍ଠ ସାମରିକ ବାହିନୀ ଗଠନ କରି ସ୍ୱଳ୍ପ ଅବଧିରେ ଭାରତବର୍ଷ ବିଜୟକରି ଚକ୍ରବର୍ତ୍ତୀ ଆଖ୍ୟା ଅର୍ଜନ କରି ପ୍ରବୃତ୍ତିର ଛନ୍ଦକୁ ଫେରି ଆସିଲେ। କୁମାରୀଗିରିର

ଏହାର ଯଥେଷ୍ଟ ପ୍ରତ୍ନତାତ୍ତ୍ୱିକ ଓ ଐତିହାସିକ କାରଣ ରହିଛି। ଖାରବେଳଙ୍କ ବାଲ୍ୟକାଳ ଓ ଯୁବରାଜ ବୟସରେ ସିଏ ଶିକ୍ଷାଲାଭ କରିବାର ପୂର୍ଣ୍ଣ ସୁଯୋଗ ପାଇଛନ୍ତି। ଚେଦିରାଜ ନିଜର ବିଚକ୍ଷଣ ଓ ଆଗ୍ରହୀ କଳିଙ୍ଗ ରାଜକୁମାରଙ୍କର ଶିକ୍ଷାର୍ଥେ ବହୁ ସମ୍ମାନିତ, ଅଭିଜ୍ଞ ଶିକ୍ଷକ ନିଯୁକ୍ତ କରିଛନ୍ତି। ଉପବେଦର ସବୁ ଅଂଶ (ଅର୍ଥ ବିଦ୍ୟା, ଧନୁର୍ବିଦ୍ୟା, ଗନ୍ଧର୍ବବିଦ୍ୟା) ଯୁବରାଜଙ୍କ ଜ୍ଞାନକୁ ସମୃଦ୍ଧ କରିଛି। କଳିଙ୍ଗ ଯୁବରାଜ ଖାରବେଳ ନିଜର



ରଙ୍ଗପୀଠ ତାଙ୍କୁ ଚୁମ୍ବକୀୟ ଶକ୍ତିରେ ଆକର୍ଷିତ କରିଛି । ନିଶ୍ଚିତ କଳିଙ୍ଗାଧିପତି ବାଲ୍ୟକାଳରୁ ଏହି ସ୍ଥଳରେ ନିଜର ଗନ୍ଧର୍ବ ବିଦ୍ୟା ଶିକ୍ଷାର ଅୟମାରମ୍ଭ କରି ଏହାକୁ ରାଷ୍ଟ୍ରର ଏକ ଶକ୍ତ ରଙ୍ଗପୀଠ ଭାବରେ ପ୍ରତିଷ୍ଠିତ କରିଥିଲେ ।

ରାଣୀଗୁମ୍ଫାରେ ଖୋଦିତ ଶିଳାରେ ଅନେକ ଦୃଶ୍ୟରେ ତତ୍କାଳୀନ କଳିଙ୍ଗରେ ଗୀତିନାଟ୍ୟ, ସଙ୍ଗୀତ, ବାଦ୍ୟ ବାଦନ ଦେଖାଯାଏ । ଏଗୁଡିକ କେତେକ କଳିଙ୍ଗର ନିଜସ୍ୱ ବାଦ୍ୟ ଦେଖିବାକୁ ମିଳେ । ବୀଣା, ବଂଶୀ, ଘଣ୍ଟ, ମର୍ଦ୍ଦଳ, ଢୋଲ ତଥା ଆଉ ଅନେକ ବାଦ୍ୟଯନ୍ତ୍ରର ବ୍ୟବହାର ଦେଖିବାକୁ ମିଳେ ।

କଳ୍ପନା କରାଯାଇପାରେ, ସାରା କଳିଙ୍ଗ ଖାରବେଳଙ୍କ ଶାସନରେ କିପରି ସଂଗୀତ, ବାଦ୍ୟ ଓ ନୃତ୍ୟକଳାରେ ଝୁମି ଉଠୁଥିଲା । କୁମାରୀଗିରିରୁ ନିର୍ଝରିତ ହେଉଥିଲା ଗୀତିନାଟ୍ୟର ଲହରି ।

ବାସ୍ତବରେ କଳିଙ୍ଗାଧିପତି ଖାରବେଳ ନିଜକୁ ସାର୍ଥକ ମଣି ଆତ୍ମ ଗର୍ବରେ ନିଜର ନାମାଙ୍କନ କରିଥିଲେ, ଗନ୍ଧର୍ବ ବେଦ ବୁଦ୍ଧ !

*References:*

1. *Hathigumpha Inscriptions*. Lines 5 & 16.
2. N. K. Sahu (1984).*Kharavela*. Orissa State Museum
3. Dhiren Dash (1977). *Chatara-Jathara-Jatra-The Theatre*, Ranigumpha, The Early History of Kalinga, Calcutta. .
4. *Natyasastra*
5. Indraji, Bhagwanlal (1885). Actes du Sixieme Congress Interntional Des Orientalist, Part III, Section 2, Leyden.
6. Wikipedia: *Kharavela*, *Gandharv*, *Gandharv Veda.*

ସମାରୋହ, ୧୨୮, ଡୁମୁଡୁମା (କ)
ଖଣ୍ଡଗିରି, ଭୁବନେଶ୍ୱର - ୩୦
ସଂଗୀତ ବିଭାଗ ମୁଖ୍ୟ
ରମାଦେବୀ ମହିଳା ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର



# ଶ୍ରୀମନ୍ଦିରରେ ଦୋଳୋତ୍ସବ ଓ ହୋଲି

**ପଣ୍ଡିତ ରାମକୃଷ୍ଣ ମିଶ୍ର**

ଦୋଳେ ଚ ଦୋଳଗୋବିନ୍ଦଂ ଚାପେ ଚ ମଧୁସୂଧନମ୍ ।
ରଥେ ତୁ ବାମନଂ ଦୃଷ୍ଟ୍ୱା ପୁନର୍ଜନ୍ମ ନବିଦ୍ୟତେ ।



ଦୋଳରେ ବା ବିମାନରେ ଦୋଳଗୋବିନ୍ଦଙ୍କୁ, ଚାପରେ ମଧୁସୂଦନ ଶ୍ରୀହରିଙ୍କୁ ଓ ରଥରେ ବାମନ ରୂପୀ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କଲେ ମନୁଷ୍ୟର ଆଉ ପୁନର୍ଜନ୍ମ ହୁଏ ନାହିଁ ବୋଲି ବିଶ୍ୱାସ ରହିଛି । ଫାଲ୍‌ଗୁନ ମାସ ଶୁକ୍ଳ ପକ୍ଷ ଦଶମୀ ତିଥି ଫଗୁଦଶମୀ ନାମରେ ଖ୍ୟାତ । ଫଗୁ ଦଶମୀରେ ମଧ୍ୟାହ୍ନ ଧୂପ ସରିଲା ପରେ ତିନି ବାଡ଼ରେ ମଇଲମ ହୋଇ ନାଲି ପାଟବସ୍ତ୍ର ଠାକୁରମାନଙ୍କୁ ଲାଗି ହୁଏ । ଏହା ପରେ ପାଳିଆ ମେକାପ ଭଣ୍ଡାର ଘରୁ ଚନ୍ଦନ ଆଣିବାରେ ତିନି ବାଡ଼ରେ ପାଳିଆ ପୁଷ୍ପାଳକମାନେ ସର୍ବାଙ୍ଗ ଚନ୍ଦନ ଲାଗି ନୀତି କରନ୍ତି । ରତ୍ନସିଂହାସନରେ ତିନି ବାଡ଼ରେ ଚାଚେରୀ ବେଶ ଆରମ୍ଭ ପୂର୍ବରୁ ମହାଜନଙ୍କ ଦ୍ୱାରା ଶ୍ରୀଦେବୀ, ଭୂଦେବୀ ଦକ୍ଷିଣ ଘରକୁ ବିଜେ ହୋଇ ବେଶ ହୁଅନ୍ତି । ବେଶ ପରେ ପାଣି ପଡ଼ି ଚାଚେରୀ ଭୋଗ ଛାମୁକୁ ଆସେ । ଏହା ପରେ ଶ୍ରୀଦେବୀ, ଭୂଦେବୀ ଏବଂ ଦୋଳଗୋବିନ୍ଦ ସିଂହାସନକୁ ବିଜେ ହେଲା ପରେ ପଞ୍ଚୋପଚାରରେ ଚାଚେରୀ ଭୋଗ ହୁଏ । ପାଣି ପଡ଼ିଲା ପରେ ପୂଜାପଣ୍ଡା, ପତି ମହାପାତ୍ର, ମୁଦିରସ୍ତଙ୍କ ଦ୍ୱାରା ଫଗୁ ଲାଗି ସହ ବନ୍ଦାପନା ହୁଏ । ଚାଚେରୀ ବେଶ ଶୁକ୍ଳ ଚତୁର୍ଦ୍ଦଶୀ ପର୍ଯ୍ୟନ୍ତ ହୁଏ ଓ ଦୋଳ ପୂର୍ଣ୍ଣମୀରେ ଠାକୁରମାନଙ୍କ ସୁନାବେଶ ହୁଏ ।

ଏହାପରେ ଆଜ୍ଞାମାଳ ପାଇବା ପରେ ଶ୍ରୀଦୋଳଗୋବିନ୍ଦ, ଶ୍ରୀଦେବୀ (ମହାଲକ୍ଷ୍ମୀ), ଭୂଦେବୀ (ସରସ୍ୱତୀ) ବିମାନରେ ରୁନ୍ଧାହୋଇ ବିଜେ ହୋଇ ସିଂହଦ୍ୱାର ଦେଇ ଘଣ୍ଟ, ଛତା, ଚାମର, କାହାଳୀ ପଟୁଆରରେ ଜଗନ୍ନାଥବଲ୍ଲଭ ମଠକୁ ବିଜେ କରନ୍ତି । ଠାକୁରମାନଙ୍କ ବିଜେ ପରେ ଶ୍ରୀମନ୍ଦିରେ ସନ୍ଧ୍ୟା ଆଳତି ହୋଇ ସନ୍ଧ୍ୟା ଧୂପ ହୁଏ । ଜଗନ୍ନାଥବଲ୍ଲଭ ମଠରେ ଭୋଗ, ଜଉଡାବ ଖେଳ, ଫଗୁ ଲାଗି

ଓ ବନ୍ଦାପନା, ଶୀତଳ ଭୋଗ ସରିବା ପରେ ବିଜେ ପ୍ରତିମାମାନେ ଶ୍ରୀମନ୍ଦିରକୁ ବାହୁଡ଼ା ବିଜେ କରି ରୁନ୍ଧାଫିଟି ଜଳଲାଗି ପରେ ଶ୍ରୀଦେବୀ, ଭୂଦେବୀ ରତ୍ନସିଂହାସନକୁ ଏବଂ ଦୋଳଗୋବିନ୍ଦ ଦକ୍ଷିଣ ଘରକୁ ବିଜେ ହୁଅନ୍ତି ।

ଫାଲ୍‌ଗୁନ ଶୁକ୍ଳ ପାପନାଶିନୀ ଏକାଦଶୀ ତିଥିରେ ସ୍ୱତନ୍ତ୍ର ନୀତି ଅନୁଷ୍ଠିତ ହୁଏ । ପୂର୍ବ ଏକାଦଶୀମାନଙ୍କରେ ଶ୍ରୀ ମଦନମୋହନ ଏକାଦଶୀ ନୀତିରେ ବିଜେ ହୁଅନ୍ତି । କିନ୍ତୁ ଫଗୁ ଦଶମୀଠାରୁ ହୋଲି ପର୍ଯ୍ୟନ୍ତ ଶ୍ରୀଦୋଳଗୋବିନ୍ଦ ସମସ୍ତ ନୀତିକୁ ବିଜେ ହୁଅନ୍ତି । ଉକ୍ତ ଦିନ ଶ୍ରୀଜଗନ୍ନାଥଙ୍କ ଦକ୍ଷିଣ ଭୁଜରୁ ଜାତ ଶ୍ରୀଦୋଳଗୋବିନ୍ଦଙ୍କ ଜୟବିଜୟ ଦ୍ୱାରଠାରେ ଏକାଦଶୀ ବନ୍ଦାପନା, ଶୀତଳ ଭୋଗ ପରେ ବାମ ଭୁଜରୁ ଜାତ ଶ୍ରୀଦେବୀ, ଭୂଦେବୀ ଜୟବିଜୟ ଦ୍ୱାରକୁ ବିଜେ ହୁଅନ୍ତି ଓ ସେଠାରେ ଫଗୁ ବନ୍ଦାପନା ହୋଇ ଆଜ୍ଞାମାଳ ପାଇବା ପରେ ବିମାନକୁ ବିଜେ କରନ୍ତି ଏବଂ ପଞ୍ଚୁପାଣ୍ଡବଙ୍କ ସହିତ ଜଗନ୍ନାଥବଲ୍ଲଭ ମଠଠାରେ ନୀତି ସାରି ଶ୍ରୀମନ୍ଦିରକୁ ବାହୁଡ଼ା ବିଜେ କରନ୍ତି ।

ଫାଲ୍‌ଗୁନ ଶୁକ୍ଳ ଚତୁର୍ଦ୍ଦଶୀ ତିଥିରେ ମଧାହ୍ନ ଧୂପ ପରେ ମଇଲମ ହୋଇ ଶ୍ରୀମନ୍ଦିରେ ଅଗ୍ନି ଉତ୍ସବ ବା ମେଣ୍ଢାପୋଡ଼ି ନୀତି ସ୍ୱତନ୍ତ୍ର ଭାବେ ପାଳନ ହୁଏ । ପାଳିଆ ମେକାପ ଭଣ୍ଡାର ଘରୁ ଚନ୍ଦନ ବିଜେ କରିବା ପରେ ପାଳିଆ ପୁଷ୍ପାଳକମାନେ ସର୍ବାଙ୍ଗ ଚନ୍ଦନ ଲାଗି କରାନ୍ତି । ପୂଜାପଣ୍ଡା, ପତି ମହାପାତ୍ର ଓ ମୁଦିରସ୍ତ ଘଣ୍ଟ, ଛତା, କାହାଳୀ ପଟୁଆରରେ ଯାଇ ଘଟୁଆରୀ ଘରୁ ଚନ୍ଦନ, ଫଗୁ ବିଜେ ହୋଇ ସିଂହାସନକୁ ଆସେ । ଶ୍ରୀଅଙ୍ଗରେ ଫଗୁ, ଚନ୍ଦନ ଲାଗି ହୋଇ ବନ୍ଦାପନା ହୁଏ । ସିଂହାସନ ତଳେ ମୁଦିରସ୍ତ ତିନି ବାଡ଼ରେ ଝିମିରି ଫଗୁ ଅଂଜଳି କରି ଶ୍ରୀଅଙ୍ଗରେ ଚନ୍ଦନ ଫଗୁ ମୁଣି ଲାଗି କରନ୍ତି । ଶ୍ରୀଦେବୀ, ଭୂଦେବୀ ଦକ୍ଷିଣ ଘରକୁ ଚାଚେରୀ ବେଶ ନିମନ୍ତେ ବିଜେ ହୁଅନ୍ତି । ଭିତରେ ବେଶ ଓ ଶ୍ରୀଜୀଉମାନଙ୍କୁ ମାଳ ଫୁଲ କର୍ପୂର ଲାଗି ପରେ ପାଣି ପଡ଼ି ଚାଚେରୀ ଭୋଗ ଆସିଲା ପରେ ଶ୍ରୀଦୋଳଗୋବିନ୍ଦ, ଶ୍ରୀଦେବୀ, ଭୂଦେବୀ ସିଂହାସନକୁ ବିଜେ ହୁଅନ୍ତି । ମୁଦିରସ୍ତ ପ୍ରସାଦ ଲାଗି କରିବା ପରେ ତିନି ବାଡ଼ରେ ତିନିଜଣ ପୂଜାପଣ୍ଡା ପଞ୍ଚୋପଚାରରେ ଭୋଗ ମଣୋହି କରାନ୍ତି । ପୂଜାପଣ୍ଡାଙ୍କଠାରୁ ଆଜ୍ଞାମାଳ ପାଇ ବିଜେ ପ୍ରତିମାମାନେ ଚାମର ଆଲଟ ହୋଇ ବିମାନକୁ ବିଜେ କରି ମହାଲକ୍ଷ୍ମୀଙ୍କ ମନ୍ଦିରର ଜଗମୋହନରେ ପୂର୍ବରୁ ପଡ଼ିଥିବା ଖଟ ଉପରେ ହାତରେ ବିଜେ ହୁଅନ୍ତି । ସେଠାରେ ଲକ୍ଷ୍ମୀନାରାୟଣଙ୍କ ଫଗୁଖେଳ ସରିଲା ପରେ ପ୍ରସାଦ ଲାଗି, ଶୀତଳ ଭୋଗ, ବନ୍ଦାପନା ହୋଇ ବିମାନକୁ ବିଜେ କରି ସିଂହଦ୍ୱାର ଓ ଲାଙ୍ଗୁଳି ମଠ ଦେଇ ଦୋଳବେଦୀର ଅଗ୍ନି ଉତ୍ସବ ଘରକୁ ବିଜେ କରନ୍ତି । ସେଠାରେ ପୂଜାପଣ୍ଡାଙ୍କ ଦ୍ୱାରା ହୋମ ହୁଏ । ହୋମ ସରିଲା ପରେ ପ୍ରସାଦ ଲାଗି ହୋଇ ଶୀତଳ ଭୋଗ ମଣୋହି ହୁଏ । ଚାମର, ଆଲଟ ଲାଗି ପରେ ବିଜେ ପ୍ରତିମାମାନେ ଅଗ୍ନି ସଂଯୋଗ ପରେ ମେଣ୍ଢାକୁଡ଼ିଆ ବା ଅଗ୍ନି ଉତ୍ସବ ଘରକୁ ବିମାନରେ ୭ ଘେରା ପରିକ୍ରମା କରି ଶ୍ରୀମନ୍ଦିରକୁ ବାହୁଡ଼ା ବିଜେ କରନ୍ତି ।

ଦୋଳ ପୂର୍ଣ୍ଣମୀରେ ସକାଳ ମଙ୍ଗଳ ଆଳତି ଓ ଅବକାଶ ନୀତି ପରେ ମଇଲମ, ସର୍ବାଙ୍ଗ ଚନ୍ଦନ ଲାଗି, ନୂଆ ବୋଇରାଣୀ ଶାଢ଼ୀ (ଏକ ପ୍ରକାର ଆକାଶୀ ବା ଶାଗୁଆ ରଙ୍ଗର ସୂତା ଲୁଗା) ଓ ଲାଲ ପାଟବସ୍ତ୍ର ଖଣ୍ଡୁଆ ଲାଗି ହୋଇ ଶ୍ରୀବିଗ୍ରହମାନଙ୍କର ତ୍ରିମୁଣ୍ଡିରେ ଗଭା ଲାଗି ହୁଏ । ବିଶେଷ ନୀତିରେ ଲାଗୁଥିବା ୧୦/୧୨ ହାତ ଲମ୍ୱ ଦେଢ ହାତ ଓସାର ଏହି ବୋଇରାଣୀ ଲୁଗା ଗଞ୍ଜାମର ବୋଇରାଣୀରୁ ବୁଣାହୋଇ ଅଣାଯାଉଥିବାରୁ ଏହା ବୋଇରାଣୀ ଶାଢୀ ନାମରେ ପରିଚିତ । ଯାତ୍ରା ଦିନମାନଙ୍କରେ ବୋଇରାଣୀ ଲୁଗା ଲାଗିହୁଏ । ତାରାବଳୀ ସଜ (ତାରାଫୁଲ ପଡ଼ିଥିବା) ଖଣ୍ଡୁଆ ଓ ଗୀତଗୋବିନ୍ଦ ଖଣ୍ଡୁଆ (ଗୀତଗୋବିନ୍ଦ ବା ରାସପଞ୍ଚାଧାୟୀ ମୁଦ୍ରିତ ଖଣ୍ଡୁଆ) ନାମରେ ଦୁଇ ପ୍ରକାର ଖଣ୍ଡୁଆ ଠାକୁର ପରିଧାନ କରନ୍ତି । ଏହାପରେ ରୋଷ ହୋମ, ସୂର୍ଯ୍ୟପୂଜା ଓ ଦ୍ୱାରପାଳ ପୂଜା ସମାହିତ ହୁଏ । ମେକାପ ସରଘରୁ ଖଇକୋରା ଭୋଗ ଛାମୁକୁ ଆଣିବା ପରେ ଦକ୍ଷିଣ ଘରୁ ଦୋଳଗୋବିନ୍ଦ ମହାଜନ ସେବକଙ୍କ ହାତରେ ରତ୍ନସିଂହାସନକୁ ବିଜେ କରନ୍ତି । ଭୋଗ ସରିବା ପରେ ଶ୍ରୀଅଙ୍ଗରୁ ଆଜ୍ଞାମାଳ ପ୍ରାପ୍ତ ହୋଇ ଦୋଳଗୋବନ୍ଦ, ଶ୍ରୀଦେବୀ ଓ ଭୂଦେବୀଙ୍କୁ ମହାଜନ, ଅଖଣ୍ଡ ମେକାପ, ଗରାବଡୁ ଓ ପାଳିଆ ଖୁଣ୍ଟିଆ ହାତରେ ବିଜେ କରାଇ ସିଂହାସନ ଚତୁଃପାର୍ଶ୍ୱରେ ୭ ଥର ପରିକ୍ରମା କରାଇ ଜୟବିଜୟ ଦ୍ୱାର ଦେଇ ଶ୍ରୀମନ୍ଦିର ଉତ୍ତର ପାର୍ଶ୍ୱରେ ଥିବା ନାଭିକଟା ମଣ୍ଡପରେ ପ୍ରସ୍ତୁତ ହୋଇଥିବା

ଖଟ ଉପରେ ବିଜେ କରାନ୍ତି । ଏଠାରେ ମହାସ୍ନାନ, ମାଜଣା, ମୁଦିରସ୍ତ ପ୍ରସାଦଲାଗି, ଶୀତଳଭୋଗ ଏବଂ ବନ୍ଦାପନା ନୀତି ଅନୁଷ୍ଠିତ ହେବା ପରେ ଦୋଳଗୋବିନ୍ଦ, ଶ୍ରୀଦେବୀ ଓ ଭୂଦେବୀ ସାତ ପାହାଚ ନିକଟରେ ପ୍ରସ୍ତୁତ ହୋଇ ରହିଥିବା ମଣି ବିମାନରେ ବିଜେ କରାନ୍ତି । ବିମାନ ବଡୁ ସେବକମାନେ ବିମାନ ବହନ କରି ଘଣ୍ଟ, ଛତା, କାହାଳୀ ପଟୁଆରରେ ମୁଖ୍ୟ ଶ୍ରୀମନ୍ଦିରକୁ ୭ ଥର ପରିକ୍ରମା କରି ବାହାରେ ଶ୍ରୀମନ୍ଦିର ନିକଟସ୍ଥ ଦୋଳବେଦୀକୁ ଆସି ବେଦୀ ଚତୁଃପାର୍ଶ୍ୱରେ ୭ ଥର ପରିକ୍ରମା କରି ବିମାନ ରଖିବା ପରେ ଗୁନ୍ଧାଫିଟି ମହାଜନ ସେବକମାନେ ଠାକୁର ଠାକୁରାଣୀମାନଙ୍କୁ ହାତରେ ବିଜେ କରାଇ ବେଦୀ ଉପରେ ୭ ଥର ଓ ଦୋଳିବନ୍ଧା ଯାଇଥିବା ସିଂହାସନର ଚତୁଃପାର୍ଶ୍ୱରେ ୭ ଥର ପରିକ୍ରମା ପରେ ଦୋଳି ଉପରେ ବିଜେ କରାନ୍ତି । ଏଠାରେ ଘଣ୍ଟ, ଛତା କାହାଳୀ ସହ ତଳୁଛ ସେବକଦ୍ୱାରା ପଟୁଆର ହୋଇ ସକାଳ ଧୂପ, ମଧ୍ୟାହ୍ନ ଧୂପ ଓ ସନ୍ଧ୍ୟା ଧୂପ ପୂଜା ଷୋଡ଼ଶ ଉପଚାରରେ ଅନୁଷ୍ଠିତ ହେବା ପରେ ଓ ସାଧାରଣ ଦର୍ଶନ ପରେ ମହାସ୍ନାନ ଓ ବେଶ ହୋଇ ଠାକୁର ଠାକୁରାଣୀମାନେ ଦୋଳିରୁ ଓହ୍ଲାଇ ମୁଦିରସ୍ତ ନିଉଛାଳି ପରେ ଦୋଳିଯୁକ୍ତ ସିଂହାସନ ଚତୁଃପାର୍ଶ୍ୱ ୭ ଥର ପରିକ୍ରମା କରନ୍ତି । ପ୍ରସାଦଲାଗି ଓ ବନ୍ଦାପନା ହୋଇ ସିଂହାସନ ତଳମଣ୍ଡପରେ ଚତୁଃପାର୍ଶ୍ୱରେ ୭ ଥର ପରିକ୍ରମା ପରେ ବିମାନକୁ ବିଜେ କରି ଦୋଳବେଦୀକୁ ୭ ଥର ପରିକ୍ରମା ପରେ ଶ୍ରୀମନ୍ଦିରକୁ ବାହୁଡ଼ା ବିଜେ କରନ୍ତି । ପୁନଃ ମୁଖ୍ୟ ଶ୍ରୀମନ୍ଦିରକୁ ୭ ଥର ପରିକ୍ରମା ପରେ ସରସ୍ୱତୀଙ୍କ ମନ୍ଦିର ସମ୍ମୁଖରେ ବିମାନ ରଖାଯାଇ ଶୀତଳ ଭୋଗ ଓ ବନ୍ଦାପନା ହୁଏ । ଏହାପରେ ସାତପାହାଚ ଦେଇ ଭିତରକାଠ ଭଣ୍ଡାର ଦ୍ୱାରଠାରେ ବିଜେ କରି ସେଠାରେ ବନ୍ଦାପନା ଓ ଜଳଲାଗି ନୀତି ଅନୁଷ୍ଠିତ ହେବା ପରେ ଦୋଳଗୋବିନ୍ଦ ଦକ୍ଷିଣଘରକୁ ଏବଂ ଶ୍ରୀଦେବୀ ଓ ଭୂଦେବୀ ରତ୍ନସିଂହାସନକୁ ବିଜେ କରନ୍ତି । ଫାଲଗୁନ ଶୁକ୍ଳ ଚତୁର୍ଦ୍ଦଶୀରେ ଦୋଳବେଦୀରେ ବହ୍ନି ଉତ୍ସବ 'ରାଜାଗ୍ନି' ଓ 'ବରାହ ଦୋଳ' ଅନୁଷ୍ଠିତ ହୁଏ ।

ପୂର୍ବୋକ୍ତ ବର୍ଣ୍ଣନା ଅନୁଯାୟୀ ବିଜେ ପ୍ରତିମାମାନେ ନାଭିକଟା ମଣ୍ଡପକୁ ବିଜେ କରିବା ପରେ ରତ୍ନସିଂହାସନସ୍ଥ ଶ୍ରୀବିଗ୍ରହମାନଙ୍କର ମଇଲମ ହୋଇ ରାଜାବେଶ ବା ସୁନାବେଶ ଓ କର୍ପୂର ଲାଗି ଅନୁଷ୍ଠିତ ହୁଏ । ଏହା ପରେ ଶ୍ରୀମନ୍ଦିରରେ ଗୋପାଳବଲ୍ଲଭ ଓ ସକାଳ ଧୂପ ଏବଂ ଭୋଗମଣ୍ଡପ ନୀତି ଶେଷ ହୋଇ ସର୍ବସାଧାରଣ ଦର୍ଶନ ବା ସାହାଣମେଲା ଦର୍ଶନ ଅନୁଷ୍ଠିତ ହୁଏ । ଶ୍ରୀବିଗ୍ରହମାନେ ସୁନା ବେଶରେ ଥିବାବେଳେ ଶ୍ରୀଦେବୀ ଓ ଭୂଦେବୀ ଦୋଳବେଦୀରୁ ଶ୍ରୀମନ୍ଦିରକୁ ପ୍ରତ୍ୟାବର୍ତ୍ତନ ପରେ ରତ୍ନସିଂହାସନରେ ଶ୍ରୀଅଙ୍ଗଲାଗି ହୁଅନ୍ତି । ସାହାଣମେଲା ଦର୍ଶନ ପରେ ସୁନାବେଶ ଓଲାଗି କରାଯାଏ । ଏହାପରେ ଅନ୍ୟାନ୍ୟ ନୀତି ହୋଇ ପହୁଡ଼ ହୁଏ । ଶ୍ରୀମନ୍ଦିରରେ ଠାକୁରମାନଙ୍କର ଦୋଳୋତ୍ସବ ପରେ ଶ୍ରୀମନ୍ଦିର ଭିତରବେଢାର ପଶ୍ଚିମରେ ଯମୁନା ସ୍ନାନ ହୋଇ ଶ୍ରୀମନ୍ଦିରକୁ ବିଜେ ହୋଇଥାନ୍ତି ।

ମାଦଳାପାଞ୍ଜି ଅନୁସାରେ ୧୨୩୦ ଖ୍ରୀଷ୍ଟାବ୍ଦରେ ଅନଙ୍ଗଭୀମ ଦେବ ଶ୍ରୀମନ୍ଦିର ବେଢା ମଧ୍ୟରେ ବଡ ଦେଉଳର ଦକ୍ଷିଣ-ପୂର୍ବ ପାର୍ଶ୍ୱରେ ଦୋଳମଣ୍ଡପ ନିର୍ମାଣ କରାଇଥିଲେ । ଶ୍ରୀଜଗନ୍ନାଥଙ୍କୁ ସେଠାକୁ ନିଆଯାଇ ଦୋଳଯାତ୍ରା ପର୍ବ ପାଳିତ ହେଉଥିଲା । କିଛିବର୍ଷ ପରେ ତାହା ଭାଙ୍ଗିଯିବାରୁ ଦୋଳମଣ୍ଡପ ଉପରେ ଶ୍ରୀଜୀଉଙ୍କ ଦୋଳିଖେଳ ବନ୍ଦ ରହିଥିଲା । ୧୫୬୦ ଖ୍ରୀଷ୍ଟାବ୍ଦ ପୂର୍ବରୁ ମୁକୁନ୍ଦ ଦେବ ଦୋଳବେଦୀ ପୁନଃ ନିର୍ମାଣ କରାଇଥିଲେ । ବର୍ତ୍ତମାନ ଶ୍ରୀମନ୍ଦିର ଉତ୍ତର-ପୂର୍ବ କୋଣରେ ଦୋଳମଣ୍ଡପ ଅବସ୍ଥିତ । ଓଡ଼ିଶାରେ ସର୍ବତ୍ର ଦୋଳ ସମୟରେ ଠାକୁରମାନେ ଭୋଗ ଖାଆନ୍ତି ଓ ଫଗୁ ଖେଳନ୍ତି । ଓଳକଣା ବିଦୁର ମନ୍ଦିରରେ ଚତୁର୍ଦ୍ଦଶୀ ଦିନ ହରିହର ମିଳନ ହୁଏ ଓ ଶାଗଭଜା ଭୋଗ ହୁଏ । ହୋଲିଦିନ ଠାକୁରମାନଙ୍କର ରଙ୍ଗଖେଳ ହୋଇଥାଏ ।

ହୋଲି ପର୍ବର ଅନେକ ପୌରାଣିକ ଆଖ୍ୟାୟିକା ରହିଛି । ଦୈତ୍ୟରାଜ ହିରଣ୍ୟକଶିପୁର ଭଗ୍ନୀ ହୋଲିକା ପରମପିତା ବ୍ରହ୍ମାଙ୍କଠାରୁ ଅଗ୍ନିରେ ଭସ୍ମ ନ ହେବାର ବରପ୍ରାପ୍ତି ହୋଇଥିଲା । ହିଣଣ୍ୟକଶିପୁର ପୁତ୍ର ପ୍ରହ୍ଲାଦ ବିଷ୍ଣୁ ଭକ୍ତ ଥିବାରୁ ହିରଣ୍ୟକଶିପୁ ପ୍ରହ୍ଲାଦକୁ ବଧ କରିବା ପାଇଁ ନାନା ଉପାୟ କରି ନ ହେବାରୁ ଶେଷରେ ଭଗ୍ନୀ ହୋଲିକାର ସାହାଯ୍ୟ ନେଇଥିଲା । ହୋଲିକା ବ୍ରହ୍ମାଙ୍କ ବରକୁ ଅପପ୍ରୟୋଗ କରି ପୁତୁରା ପ୍ରହ୍ଲାଦକୁ ଧରି ଅଗ୍ନିରେ ପଶିବାରୁ ନିଜେ ଭସ୍ମ

ହୋଇଗଲା । ହୋଲିକାର ଦହନ ଓ ପ୍ରହ୍ଲାଦର ବିଜୟ ସ୍ମାରକୀ ରୂପେ ହୋଲି ପର୍ବ ପାଳିତ ହେଉଅଛି ।

ଅନ୍ୟପକ୍ଷେ ପୌରାଣିକ ମତରେ ହୁଲି ନାମକ ଏକ ଅସୁରକନ୍ୟା ବିଷ୍ଣୁଙ୍କଠାରୁ ବରପ୍ରାପ୍ତ ହୋଇ ମେଷାସୁର ନାମକ ଏକ ପୁତ୍ରକୁ ଜନ୍ମ ଦେଇଥିଲା । ମେଷାସୁର ଗୋପୀମାନଙ୍କୁ ହଇରାଣ କରିବାରୁ ଶ୍ରୀକୃଷ୍ଣଙ୍କ ପରାମର୍ଶରେ ଗୋପୀମାନେ ତାକୁ ଅଗ୍ନିରେ ଭସ୍ମ କରିଦେଲେ ଓ ଆସୁରୀ ହୁଲିକୁ ସାନ୍ତ୍ୱନା ଦେବା ପାଇଁ ହୋଲି ପର୍ବ ପ୍ରଚଳନ କରିଥିଲେ । ସେଥିପାଇଁ ଏହିଦିନ ମେଣ୍ଢାର ଏକ ମୂର୍ତ୍ତି ଏକ ନଡ଼ା କୁଡ଼ିଆରେ ରଖାଯାଇ ଦାହ କରାଯାଏ ଓ ରାଧାକୃଷ୍ଣ ବିମାନରେ କୁଡ଼ିଆ ଚାରିପଟେ ୭ଥର ପରିକ୍ରମା କରନ୍ତି । ଅନ୍ୟ ଏକ କାହାଣୀ ଅନୁଯାୟୀ ମେଷାସୁରକୁ ମାରିବା ପାଇଁ ଶ୍ରୀକୃଷ୍ଣ ତା'ର ମୁଖଗହ୍ୱର ମଧ୍ୟକୁ ପ୍ରବେଶ କରି ତାକୁ ବଧ କଲେ । ମେଷାସୁର ବରପ୍ରାପ୍ତ ହୋଇଥିଲା ଯେ, ତା'ର ଦେହର ରକ୍ତ ଭୂମିରେ ପଡ଼ିଲେ ରକ୍ତବୀଜ ରୂପେ ସେ ପୁନଶ୍ଚ ଜନ୍ମଲାଭ କରିବ । ତେଣୁ ଶ୍ରୀକୃଷ୍ଣଙ୍କ ଦେହରେ ଲାଗିଥିବା ରକ୍ତ ଭୂମିରେ ନ ପଡ଼ିବା ପାଇଁ ଗୋପୀମାନେ ଶ୍ରୀକୃଷ୍ଣଙ୍କ ଦେହରେ ଫଗୁ ବୋଳି ଦେଇଥିଲେ ।



ଏହି ଜନଶ୍ରୁତି ରୂପେ 'ବସନ୍ତ ଉତ୍ସବ' ଓ 'ଦୋଳ ଉତ୍ସବ' ସମୟରେ ରାଧାମାଧବଙ୍କ ଅର୍ଚ୍ଚନା ଓ ଫଗୁ ଅର୍ପଣ ସହ ରଙ୍ଗ ଖେଳର ଉତ୍ସବ ପାଳିତ ହେଉଛି ।

ଏହି ହୋଲିଦିନ ଭଗବାନ ଶଙ୍କର କନ୍ଦର୍ପକୁ ଦହନ କରିଥିବାର ଦକ୍ଷିଣ ଭାରତର ଲୋକମାନେ ବିଶ୍ୱାସ କରନ୍ତି ଏବଂ ସେହି ସ୍ମାରକୀ ରୂପେ ଏହା ପାଳନ କରାଯାଉଛି । ଏହି ଶୁକ୍ଳ ଚତୁର୍ଦ୍ଦଶୀ ଉତ୍ସବରେ ମାରଓ୍ୱାଡ଼ି ସମ୍ପ୍ରଦାୟର ମହିଳାମାନେ ପରମ୍ପରା ଅନୁସାରେ ପୂଜା ବନ୍ଦାପନା କରି ଘଷିମାଳମାନ ଲଟକାଇ ସୂତାରେ ବାନ୍ଧିଥାନ୍ତି ଓ ପୋଡ଼ିଥାନ୍ତି । ଓଡ଼ିଶାରେ ମେଲଣ ଯାତ୍ରା ପରେ ଠାକୁରମାନଙ୍କର ଯମୁନାସ୍ନାନ ହୋଇ ଯଥାରୀତି ମନ୍ଦିରମାନଙ୍କୁ ବିଜେ କରନ୍ତି ।

ଏ.ଏଲ୍.୫୩- ବୀର ସୁରେନ୍ଦ୍ର ସାଏ ନଗର
ଭୁବନେଶ୍ୱର



# ଗୀତାମୃତ

ଇଂଜିନିୟର ରଘୁନାଥ ପାତ୍ର

ସଦାଚାର ଆଧାତ୍ମିକ ଉନ୍ନତି ସହିତ
ଈଶ୍ୱର ସାକ୍ଷାତକାର ଦିବ୍ୟ ସ୍ପର୍ଶ ପାଇଁ
ଭଗବାନ ଅର୍ଜୁନଙ୍କୁ ଦେଲେ ଦିବ୍ୟ ଜ୍ଞାନ
ଗୀତା ଛଳେ ବିଶ୍ୱେ ଯା'ର ପଟାନ୍ତର ନାହିଁ ।

ଭଗବାନଙ୍କ ଶ୍ରୀମୁଖ ନିସୃତ ସଙ୍ଗୀତ
ଗୀତା ନାମେ ଅଭିହିତ ଜ୍ଞାନଭକ୍ତି ସିନ୍ଧୁ
ମହାଭାରତର ଭୀଷ୍ମ ପର୍ବରେ ବର୍ଣ୍ଣିତ
ଅଷ୍ଟାଦଶ ଅଧ୍ୟାୟରୁ ଝରେ ସୁଧା ବିନ୍ଦୁ ।

ସାତସହ ଏକ ଶ୍ଳୋକ ରଚିତ ଏ ଗ୍ରନ୍ଥ
ଯହିଁରେ ରହିଛି ଭରି କର୍ମଜ୍ଞାନ ଭକ୍ତି
ନିଜକୁ ନ ଭାବି କର୍ତ୍ତା ଗର୍ବୋନ୍ମତ୍ତ ଜୀବ
ଈଶ୍ୱରଙ୍କ ପାଦପଦ୍ମେ ଜଣାଏ ପ୍ରପତ୍ତି ।

ଏ ସଂସାର କୁରୁକ୍ଷେତ୍ର, ଅର୍ଜୁନ ଏ ଜୀବ
ଜୀବନ ସଂଗ୍ରାମେ ମାୟା ମମତାରେ ଘାରି
ପଛଘୁଞ୍ଚା ଦେବା ବେଳେ ଚିତ୍ତ ଉଦ୍ଦୀପକ
ମହାନ ନିଗୂଢ ଜ୍ଞାନ ଦେଇଥାନ୍ତି ହରି ।

ସର୍ବବେଦ ସାର, ଉପନିଷଦ ସାରାଂଶ
ଜାତି ଧର୍ମ ନିର୍ବିଶେଷେ ବିଶ୍ୱ ମାନବର
ପଥ ପ୍ରଦର୍ଶକ ହେଲେ ଜ୍ଞାନାଲୋକ ଦେଇ
ଜୀବ ପ୍ରତି ଦୟା କରି କୃପାଳୁ ଶ୍ରୀଧର ।

ତ୍ରିତାପ ବିଦଗ୍ଧ ଜୀବ ଜୀବନ ସମସ୍ୟା
ସମାଧାନ କରେ ଗୀତା ଦେଇ ସୁଖ ଶାନ୍ତି
ଅପୂର୍ବ ଏ ଗୀତାଗ୍ରନ୍ଥ ସର୍ବଦା ରୁଚିର
ସଂଶୟ କରେ ଛେଦନ, ଦୂର କରେ ଭ୍ରାନ୍ତି ।

ଉପନିଷଦ ବୃକ୍ଷର ସୁଧାମୟ ଫଳ
କର୍ମଜ୍ଞାନ ଭକ୍ତି ଯୋଗ ସର୍ବ ସମନ୍ୱୟ
ନିରପେକ୍ଷ ସମାଧାନ, ପ୍ରାଞ୍ଜଳ ଆଲେଖ୍ୟ
ସର୍ବଶ୍ରେଷ୍ଠ ଦାନ ବିଶ୍ୱେ ଜ୍ଞାନାନନ୍ଦମୟ ।

ଦୁଗ୍ଧବତୀ ଗାଭୀ ହେଲେ ସର୍ବୋପନିଷଦ
କୃଷ୍ଣ ଦୋଗ୍‌ଧା, ପାର୍ଥ ବତ୍ସା, ଦୁଗ୍ଧ ଗୀତାମୃତ
ପାନ କରି କୁରୁକ୍ଷେତ୍ରେ ଅର୍ଜୁନ ନିଜକୁ
ଭାବିଲେ ନିମିତ୍ତ ମାତ୍ର, କର୍ତ୍ତା ହିଁ ଅଚ୍ୟୁତ ।

ଗୀତାରୂପୀ ମହାସିନ୍ଧୁ ଗର୍ଭରେ ଅମୂଲ୍ୟ
ପରିପୂର୍ଣ୍ଣତାର ମୁକ୍ତା ଅଛି ଭରପୂର
ସ୍ପର୍ଶମଣି ସ୍ପର୍ଶେ ଲୌହ ସ୍ୱର୍ଣ୍ଣ ହେଲା ପରି
କଳୁଷିତ ଜୀବ ଲଭେ ଦିବ୍ୟତ୍ୱ ଅପାର ।

କବି ରଘୁ କହେ ଭବ ବନ୍ଧନରୁ ଜୀବ
ଯଦି ଚାହଁ ମୁକ୍ତି ଅବା ପ୍ରଶାନ୍ତି ଶାଶ୍ୱତ
କର୍ମ କର, ପାଦପଦ୍ମେ ହୋଇ ସମର୍ପିତ
ସବୁ ଦେବେ ପୂର୍ଣ୍ଣକାମ ପଦ୍ମାଳୟ କାନ୍ତ ।

ବୃନ୍ଦାବନ ଧାମ, ଲୋକନାଥ ରୋଡ
(ପାଟଣାହାଟ ସାହି ଛକ)
ପୁରୀ– ୭୫୨୦୦୧